# ଭିନ୍ନ ବଣମଲ୍ଲୀ

ଲେଖକ ଶ୍ରୀମତୀ ସତ୍ୟଭାମା ବିଶ୍ୱାଳ
ପ୍ରକାଶନ କାଳ ରାସପୂର୍ଣ୍ଣିମା, ୨୦୨୧

**ପ୍ରକାଶକ:**
କାଉନ୍‌ସିଲ୍ ଅଫ୍ ଏବିଲିଟି ରିସର୍ଚ୍ଚ ଆଣ୍ଡ ଜେନେରେସନ୍ (କାର୍ଗ)
ପ୍ଲଟ ନମ୍ବର-୪୩୫୭, ପାଣ୍ଡବ ନଗର, ରୋଡ୍ ନଂ-୨
ଟଙ୍କପାଣି ରୋଡ୍, ଭୁବନେଶ୍ୱର-୭୫୧୦୧୮
ଫୋନ୍- ୮୨୪୯୪୯୬୮୩୫

**ମୁଦ୍ରଣ:**
ଶିକ୍ଷାସନ୍ଧାନ
ଭୁବନେଶ୍ୱର - ୭୫୧୦୧୫
ସହଯୋଗ ରାଶି-୧୨୦ଟଙ୍କା
ବିକ୍ରିଲବ୍ଧ ସମସ୍ତ ଅର୍ଥ ଆର୍ଯ୍ୟ ଋଷିକୁଳ ବଶିଷ୍ଠ ଯୋଗାଶ୍ରମକୁ ସମର୍ପିତ।

---

BHINNA BANAMALLI

Written by:-Smt. Satyabhama Biswal
Date of publication:- Rasapurnima, 2021

**Published by:**
Council of Ability Research and Generation (CARG)
Plot No.-4357, Pandav Nagar, Road No.2
Tankapani Road, Bhubaneswar-751018
Phone:8249496835

**Printed at:**
Sikshasandhan, Bhubaneswar-751015

Price: Rs. 120/-

# ଉତ୍ସର୍ଗ

ମୋ ଲେଖାଗୁଡ଼ିକ ଯେଉଁମାନଙ୍କ ପ୍ରାଣରେ ପୁଲକ ଜଗାଉଛି ସେଇମାନଙ୍କୁ.....

## ପ୍ରକାଶକୀୟ............

କଥାରେ ଅଛି ପୁଷ୍ପେଷୁ ମଲ୍ଲୀ। ଫୁଲ ରାଇଜର ରାଣୀ 'ମଲ୍ଲୀ'। ଉପବନ ଭିତରେ ସଯତ୍ନ ପ୍ରଷ୍ଫୁଟିତ ମଲ୍ଲୀ ଫୁଲଟିଏ ତା'ର ରୂପ ଆଉ ସୁଗନ୍ଧରେ ସୁଗନ୍ଧ ପିପାସୁଙ୍କୁ ବିମୁଗ୍ଧ କରିଥାଏ। କେତେବେଳେ ମଲ୍ଲୀ ଫୁଲଟି ପ୍ରେମିକାର ଗଭାମଣ୍ଡନ କରିଥାଏ ତ କେତେବେଳେ ଦେବ ପୂଜନ ପାଇଁ ପୁଷ୍ପ ସମ୍ଭାର ଭିତରେ ପୂଜା ଥାଳିରେ ସ୍ଥାନ ପାଇଥାଏ। ପୁଣି ପରମ ପ୍ରେମମୟୀ ଶ୍ରୀରାଧା ତାଙ୍କର ପ୍ରେମମୟ ଶ୍ୟାମ ସୁନ୍ଦରଙ୍କୁ ମଲ୍ଲୀମାଳ ଅର୍ପଣ କରି ମନ ତୋଷିବାର ନଜିର ଓଡ଼ିଆ ସାହିତ୍ୟରେ ଦେଖିବାକୁ ମିଳେ। ତେଣୁ ମଲ୍ଲୀଫୁଲର ଆଦର ଓ ସାହିତ୍ୟିକ ମୂଲ୍ୟକୁ କଳନା କରି ହୁଏନା। ମାତ୍ର ଅନୁରୂପ ସୌନ୍ଦର୍ଯ୍ୟ ଓ ସୁଗନ୍ଧର ଅଧିକାରୀ ହୋଇ ମଧ୍ୟ ଫୁଲଟିଏ ଗହଳିଆ ତରୁଲତାର କେଉଁ ନିଭୃତ କୋଣରେ ଲୁଚି ରହିଥାଏ। ଲୋକେ ତାକୁ କହିଥାନ୍ତି 'ବଣମଲ୍ଲୀ'। କେହି ତାକୁ ଖୋଜିଲୋଡ଼ି ମାଳ ଗୁନ୍ଥି ନଥାଏ କି ସେ କେଉଁ ଦେବତାଙ୍କର ପୂଜାର୍ଚ୍ଚନାରେ ବ୍ୟବହୃତ ହୋଇ ନଥାଏ। କିନ୍ତୁ ସୁଗନ୍ଧ ପିପାସୁ ପଥିକର ଦୃଷ୍ଟି ତାକୁ ଏଡ଼େଇ ଯାଇପାରେ ନାହିଁ। ଚାଲୁଥିବା ବାଟରେ ଦଣ୍ଡେ ହେଲେବି ଅଟକି ରହି ସେ ଅନ୍ୱେଷଣ କରିଥାଏ ସୁଗନ୍ଧର ଉତ୍ସକୁ।

ମୋ ବୋଉ ଲେଖିକା ନୁହେଁ କି କବି ନୁହେଁ। ଅବସର ସମୟରେ ତା ମନକୁ ଯାହା ଭାବନା ଆସିଛି ସେଗୁଡ଼ିକୁ ମୁଁ କେବଳ ପ୍ରକାଶ କରିଛି। ତା' ଲେଖା ଗୁଡ଼ିକ ମଲ୍ଲୀମାଳ ପରି ସାହିତ୍ୟ ଜଗତକୁ ସୁଗନ୍ଧିତ କରି ନପାରିଲେ ବି ନିଭୃତ ବନାନୀର ବଣମଲ୍ଲୀ ପରି ପାନ୍ଥ ପାଠକକୁ କିଛିକ୍ଷଣ ଅଟକାଇ ପାଠକୀୟ ସନ୍ତୋଷ ପ୍ରଦାନ କରିବ ବୋଲି ଆଶା ଓ ବିଶ୍ୱାସ।

ପ୍ରକାଶିକା
ଚେତନା ବିଶ୍ୱାଳ
ମୋ-୮୨୪୯୪୯୬୮୩୫

# ତାଙ୍କର ଅମୃତସ୍ରାବୀ ଲେଖନୀ ଏହିପରି ଚଳଚଞ୍ଚଳ ରହିଥାଉ.....

ଦ୍ୱାପର ଯୁଗର କଥା। କୁରୁ ଓ ପାଣ୍ଡବମାନଙ୍କର ଗୁରୁ ଦ୍ରୋଣାଚାର୍ଯ୍ୟଙ୍କ ଆଶ୍ରମରେ ବିଦ୍ୟାଲାଭ ଶେଷ ହେଲା। ଅଳ୍ପଦିନପରେ ଫେରିଯିବେ ହସ୍ତିନାର ରାଜପୁରକୁ। ଗୁରୁ ଶେଷ ପରୀକ୍ଷା ନେବା ପାଇଁ ଉଭୟ ପକ୍ଷର ଦୁଇ ଜ୍ୟେଷ୍ଠ ସନ୍ତାନ ଯୁଧିଷ୍ଠିର ଓ ଦୁର୍ଯ୍ୟୋଧନଙ୍କୁ ପାଖକୁ ଡାକିଲେ। ପ୍ରଥମେ ଯୁଧିଷ୍ଠିରଙ୍କୁ ଆଜ୍ଞାଦେଲେ – ତିନି ଦିନ ସମୟ ଦେଲି, ଯାଅ ଆଖପାଖ ଅଞ୍ଚଳରେ ବୁଲାବୁଲି କର, ଲୋକଙ୍କ ସହ ମିଶ ଏବଂ ଯେଉଁ ଲୋକଟି ତୁମକୁ ଖୁବ୍ ଖରାପ ଲାଗିବ ତାଙ୍କୁ ମୋ ପାଖକୁ ନେଇ ଆସିବ। ସେହିପରି ଦୁର୍ଯ୍ୟୋଧନଙ୍କୁ କହିଲେ – ତୁମେ ମଧ ପାଖ ଆଖ ଅଞ୍ଚଳର ଲୋକଙ୍କ ସହ ତିନି ଦିନ ମିଶାମିଶି କରିବ, ଯେଉଁ ଲୋକ ତୁମକୁ ଖୁବ୍ ଭଲ ମନେ ହେବ, ତାଙ୍କୁ ମୁଁ ଡାକୁଛି କହି ମୋ ପାଖକୁ ନେଇ ଆସିବ।

ତିନିଦିନ ବିତିଗଲା। ଉଭୟ ରାଜକୁମାର ଏକା ଏକା ଆସି ପହଞ୍ଚିଗଲେ। ଗୁରୁ ଦ୍ରୋଣାଚାର୍ଯ୍ୟ ସେମାନଙ୍କୁ ଏକୁଟିଆ ସାକ୍ଷାତ କରିବାକୁ ଡକାଇଲେ। ଯୁଧିଷ୍ଠିର ପ୍ରଥମେ ଗଲେ ଏବଂ ଜଣାଇଲେ, "ଗୁରୁଦେବ, ଈଶ୍ୱରଙ୍କ ସୃଷ୍ଟିରେ ଯାହାକୁ ଦେଖିଲି, ଯାହାଙ୍କ ସହ ମିଶିଲି, ସେମାନେ ସମସ୍ତେ ମୋତେ ଭଲ ଲାଗିଲେ। ତେଣୁ ଜଣେ ହେଲେ ଖରାପ ଲୋକ ପାଇଲି ନାହିଁ, ଏକା ଏକା ଫେରିଆସିଛି, ମୋତେ କ୍ଷମା କରନ୍ତୁ।"

ଏହାପରେ ପରୀକ୍ଷା ଦେବାର ପାଳି ପଡ଼ିଲା ଦୁର୍ଯ୍ୟୋଧନଙ୍କର। ସେ କହିଲେ, "ଗୁରୁଦେବ, ଜଣେ ଭଲ ଲୋକ ସନ୍ଧାନରେ ବହୁ ଅଞ୍ଚଳ ବୁଲିଲି, ବହୁ ଲୋକଙ୍କ ସହ ମିଶିଲି। ମାତ୍ର କେଉଁଠି ହେଲେ ଜଣେ ଭଲ ଲୋକ ପାଇଲି ନାହିଁ, ଲୋକ ଉପରକୁ ମିଠା କଥା କହୁଛନ୍ତି, ମାତ୍ର ସେମାନଙ୍କ ସହ ଅଧିକ ମିଶିଲେ, ସେମାନଙ୍କ ଚରିତ୍ରର ଦୋଷ ଦୁର୍ବଳତା ପ୍ରକାଶ ପାଉଛି। ତେଣୁ ଜଣେ ହେଲେ ବି ଭଲଲୋକ ନପାଇ ମୁଁ ଫେରିଆସିଲି।"

ଗୁରୁ ଉଭୟଙ୍କୁ ସମାନ ବିଦ୍ୟା ପ୍ରଦାନ କରିଥିଲେ ହେଁ ସେମାନେ ନିଜ ନିଜର ଆଗ୍ରହ ବଳରେ ଭିନ୍ନ ଭିନ୍ନ ସ୍ୱଭାବ ଆଚରଣ କରିଥିଲେ।

ସାରଳା ମହାଭାରତରେ ଲେଖାଅଛି ୧୪ ବର୍ଷ ବନବାସ ସମୟରେ ପାଣ୍ଡବମାନେ ବିଭିନ୍ନ ତୀର୍ଥ ସ୍ଥଳ ପର୍ଯ୍ୟଟନ କରୁ କରୁ ପ୍ରାଚୀନ ବିରଜା କ୍ଷେତ୍ର ଯାଜପୁରରେ ପହଞ୍ଚିଛନ୍ତି। ସେଠାରେ ହରିସାହୁଙ୍କ କନ୍ୟା (ସିଂହାଣୀ କନ୍ୟା) କୁ ଭଲ ପାଇ ବିବାହ କରିଛନ୍ତି। ସାରଳା ଦାସ କିନ୍ତୁ ଯୁଧିଷ୍ଠିରଙ୍କ ପିଲାପିଲି କଥା ଲେଖିନାହାନ୍ତି। ସେ ଯଦି ଅଧିକ ଦିନ ବଂଚିଥାନ୍ତେ ଆମ ସତ୍ୟଭାମା ନାନୀ (ମୋ ସ୍ତ୍ରୀ କଞ୍ଚନା ତାଙ୍କ ତଳ ଶ୍ରେଣୀରେ ଭଦ୍ରକ କଲେଜରେ ପଢୁଥିଲା ଏବଂ ତାଙ୍କୁ ନାନୀ ବୋଲି ଡାକୁଥିଲା ଯଦିଚ ତାଙ୍କ ସ୍ୱାମୀ ୰ ବୈକୁଣ୍ଠ ବିଶ୍ୱାଳ ମୋତେ ଜହ୍ନୁରୀ ଭାଇ ବୋଲି ଡାକୁଥିଲେ)ଙ୍କ ଆଚରଣ ବ୍ୟବହାର, ପରଦୁଃଖ କାତରତା ଓ ସେବା ମନୋଭାବ ତାଙ୍କ ନଜରରେ ପଡ଼ିଥାଆନ୍ତା। ସେ ନିଶ୍ଚେ ତାଙ୍କୁ ଯୁଧିଷ୍ଠିରଙ୍କ କନ୍ୟା ଆଖ୍ୟା ଦେଇଥାଆନ୍ତେ ବୋଲି ମୋର ଦୃଢ଼ ବିଶ୍ୱାସ।

ମୁଁ ଚତୁର୍ଥ ଶ୍ରେଣୀରେ ନାମ ଲେଖାଇଥାଏ, ଅଳ୍ପଦିନ ହାଇସ୍କୁଲ୍‌କୁ ଯାଇଥାଏ। ଦିନେ ଗୋଟିଏ ଶଗଡ଼ ଗାଡ଼ି ଭିତରେ ଥିବା ଓଦର ଭିତରେ ବସି ଯାଉଥାଏ ଜାଳେଣି କାଠ ଆଣିବାକୁ। ହଠାତ୍ ଦେବୀ ମା'ଙ୍କ ଉଚ୍ଚପୀଠରୁ ଗାଡ଼ିଟି ତଳକୁ ଖସିପଡ଼ିଲା। ସେଥିରେ ଥିବା ଓଦର ଭିତରେ ମୁଁ ଖସିଲି । ମୋ ମୁଣ୍ଡ ଉପରେ ଶଗଡ଼ ଚକ ଚଢ଼ିଗଲା। ୧୯୫୪ ମସିହାର କଥା। ଗାଁ ଗଣ୍ଡାରେ ଛୋଟ ଡାକ୍ତରଖାନା ଥାଏ। ତଥାପି ଡାକ୍ତରବାବୁ ଅବନୀ ବନ୍ଧୁ ମଜୁମଦାର ବଡ଼ ଯତ୍ନର ସହ ବିନା ନିଶ୍ଚେତକରେ ମୋ ମୁଣ୍ଡର ଦୁଇ ପାର୍ଶ୍ୱ ସିଲେଇକଲେ। ମୁଁ ଖୁବ୍ ଜୋର୍‌ରେ କାନ୍ଦୁଥାଏ। ବାରମ୍ବାର କହୁଥାନ୍ତି, "ନୃସିଂହ, ଏତେବଡ଼ ବିପଦରୁ ବଂଚିଗଲ। ନିଶ୍ଚୟ ତୁମେ ଜଣେ ବଡ଼ ମଣିଷ ହେବ।" ବାରମ୍ବାର ତାଙ୍କର ଏହି ଆଶ୍ୱାସନା ମୋତେ ଏକପ୍ରକାର ବଂଚାଇ ଦେଲା। ଏହାପରେ ସେ ଦୁଇ ତିନିଥର ଆମ ଘରକୁ ଆସି ମୋତେ ଦେଖି ମାଗଣା ଔଷଧ ପତ୍ର ଦେଇ ଯାଉଥିଲେ। ସେ ଆମ ସ୍କୁଲ୍‌କୁ ଯାଇ ସାର୍‌ମାନଙ୍କୁ ମୋ ଅବସ୍ଥା କଥା ଜଣାଇ ଦେବାରୁ ସାର୍‌ମାନେ ମଧ୍ୟ ଦଳ ଦଳ ହୋଇ ଆସିଲେ। ସମସ୍ତେ ଡାକ୍ତର ବାବୁଙ୍କ କଥା ଦୋହରାଉଥିଲେ। କ୍ରମେ କ୍ରମେ ମୋ ଭିତରେ ଜଣେ ବଡ଼ ମଣିଷ ହେବାର ଆକାଂକ୍ଷା ସୃଷ୍ଟି ହେଲା। ସତ୍ୟଭାମା ନାନୀ ବର୍ତ୍ତମାନ ଯେତେଯେତେ ସଦ୍‌ଗୁଣର ଅଧିକାରିଣୀ ହୋଇଛନ୍ତି, ସେଥିରୁ କିଛି କିଛି ଆୟତ୍ତ କରିବାକୁ ଚେଷ୍ଟାକଲି।

ମାଟ୍ରିକ୍ ପରୀକ୍ଷା ପରେ ହଠାତ୍ ସାକ୍ଷାତ ହୋଇଗଲା 'ଜ୍ଞାନମଣ୍ଡଳ' ପ୍ରଣେତା ପଦ୍ମଶ୍ରୀ ବିନୋଦ କାନୁନ୍‌ଗୋଙ୍କ ସହିତ। ମୁଁ ତାଙ୍କୁ ଜ୍ଞାନମଣ୍ଡଳ ଲେଖାଲେଖିରେ

ସାହାଯ୍ୟ କରୁଥିଲି। ତେଣୁ ଅତି ଅଳ୍ପଦିନ ମଧ୍ୟରେ ସେ ମୋତେ ଓଡ଼ିଶାର ୫୦୦ ବରପୁତ୍ରଙ୍କ ଜୀବନୀ ଏନ୍‌ସାଇକ୍ଲୋପେଡ଼ିଆ ଲେଖିବାକୁ ନିର୍ଦ୍ଦେଶ ଦେଲେ। ତାଙ୍କ ପରଲୋକ ପରେ ମୁଁ ୫୦୦ ବରପୁତ୍ରଙ୍କ ଜୀବନୀ ସଂଗ୍ରହ କରୁକରୁ ଏବେ ସୁଦ୍ଧା ୫ ହଜାର ବରପୁତ୍ରଙ୍କ ଜୀବନୀ 'ଆମେ ଓଡ଼ିଆ'ର ୮ ଭାଗ ଗ୍ରନ୍ଥରେ ଲେଖି ପ୍ରକାଶ କରିସାରିଲିଣି। ଏଥିପାଇଁ ମୁଁ ସର୍ବସ୍ୱାନ୍ତ ହୋଇଗଲିଣି।

କିନ୍ତୁ ସତ୍ୟଭାମା ନାନୀଙ୍କ ଲେଖାଗୁଡ଼ିକୁ ପଢ଼ି ପଢ଼ି ମୋ ମନରେ ଈର୍ଷା ହେଲା। ପ୍ରତି ଲେଖାରୁ ଯେପରି ଅମୃତ ଝରୁଛି, ମୁଁ ଯଦି ୨୫ ବର୍ଷ ତଳେ ଏଭଳି ଭଲ ମଣିଷଙ୍କ ଅଙ୍ଗେନିଭା କଥା, ସ୍ମୃତି ସବୁ ପଢ଼ିବାର ସୁଯୋଗ ପାଇଥାଆନ୍ତି, ତେବେ ୫ ହଜାର ବଡ଼ ମଣିଷଙ୍କ ପରିବର୍ତ୍ତେ ୫ ଶହ ଭଲ ମଣିଷଙ୍କ କାହାଣୀ ଲେଖି ଅଧିକ ଆତ୍ମ ସନ୍ତୋଷ ଲାଭ କରିଥାଆନ୍ତି। .......

ମୋତେ ଲାଗେ ସତ୍ୟଭାମାଙ୍କ ପ୍ରତ୍ୟେକ କବିତାରେ ସନ୍ଥକବି ଭୀମଭୋଇଙ୍କ ଦରଦୀ ଆତ୍ମାର ପ୍ରବେଶ ଘଟିଛି। କେତେ କରୁଣ ସେସବୁ। ଇଂରେଜ କବି ପି.ବି. ସେଲି ଲେଖିଥିଲେ, Our sweetest songs are those that tell of saddest thought. ତାଙ୍କର 'ଜରା ନା କାରା' କବିତାଟି ଆମ ଭଳି କେଉଁ ବୁଢ଼ାଙ୍କ ଆଖିରେ ଲୋତକ ଭରି ନଦେବ!

ଗତ ବର୍ଷ କରୋନା ଆକ୍ରାନ୍ତ ହୋଇ ଦୁର୍ବଳ ହୋଇପଡ଼ିଥିଲି। ଛଅ ମାସ ହେଲା ଗାଧୁଆ ଘରେ ପଡ଼ିଯିବା ଫଳରେ ଡାହାଣ ହାତ ଭାଙ୍ଗିଯାଇଛି। ସେହିଦିନଠୁ କଲମ ଧରିବାକୁ ହାତରେ ବଳପାଉନଥିଲା। ତଥାପି ସ୍ନେହର ସତ୍ୟଭାମା ନାନୀ (ଜଣେ ଅମୃତ ମଣିଷ)ଙ୍କ ଅନୁରୋଧ ରକ୍ଷା କରି ଆଜି ପବିତ୍ର ଗାନ୍ଧୀଜୟନ୍ତୀ ଦିବସରେ ମନକୁ ଯାହା ଆସିଲା (ଜୀବନର ଦୀପ ଲିଭି ଲିଭି ଆସିବା ବେଳେ) ଦୁଇ ପଦ ଲେଖି ଶୁଭକାମନା ଜଣାଉଛି। ତାଙ୍କର ଲେଖନୀ ଏହିଭଳି ସୁଶବ୍ଦର ଅମୃତ ବୃଷ୍ଟି କରି ଚାଲିଥାଉ। ଏଥିପାଇଁ ଝିଅ ଚେତନା ଏବଂ ଜ୍ୱାଇଁ ଅନୀଲଙ୍କ ସହଯୋଗ ଅବ୍ୟାହତ ରହିଥାଉ।

ଶୁଭାନୁଧ୍ୟାୟୀ ନୃସିଂହ ଚରଣ ସାହୁ

(ଜହ୍ନୁରୀ ଭାଇ)

# ଅମୃତ ସାଗରତୀରେ..........

ପିଲାଦିନେ ସ୍କୁଲରେ ପାଠ ପଢ଼ିବା ବେଳେ କେହି କେହି ପଚାରନ୍ତି, ତୁ ବଡ଼ ହେଲେ କ'ଣ ହେବୁ ? ଉତ୍ତର ଦିଏ ପାଠ ପଢ଼ି ବଡ଼ ଲୋକ ହେବି। ସେତେବେଳେ ବଡ଼ ଲୋକର ସଂଜ୍ଞା ବଡ଼ ଅସ୍ପଷ୍ଟ ଥାଏ। କ୍ରମେ ବୟସ ବଢ଼ିବା ସଙ୍ଗେ ସଙ୍ଗେ ବଡ଼ ଲୋକର ସଂଜ୍ଞା ମଧ୍ୟ ବଦଳିବାରେ ଲାଗିଲା। କେତେବେଳେ ବହୁତ ଧନୀ, କେତେବେଳେ ବଡ଼ ଚାକିରୀ, କେତେବେଳେ ସମାଜରେ ମହତ ମଣିଷ। ପ୍ରକୃତରେ ବଡ଼ ମଣିଷ କିଏ ? ତା'ର ଉତ୍ତର ନିଶ୍ଚୟ ହୃଦୟବାନ୍ ମଣିଷ।

ଆକାଶର ରଙ୍ଗକୁ ଚାହିଁ ଯେ ଖୁସି ହୋଇପାରେ, ଚଢ଼େଇମାନଙ୍କ କାକଳୀ ଭିତରେ ଯେ ନିଜକୁ ହଜାଇ ଦେଇପାରେ, ଦୂରରୁ ଭାସି ଆସୁଥିବା ଗାଈଆଳ ପିଲାର ବଂଶୀଧ୍ୱନି କିମ୍ବା କେଉଁ ଦୂର ଦେବାଳୟରୁ ଶୁଭୁଥିବା ସନ୍ଧ୍ୟାକାଳୀନ ଶଙ୍ଖ ଘଣ୍ଟ ଘଣ୍ଟା ଧ୍ୱନିରେ ଯେ ନିଜକୁ ତଲ୍ଲୀନ କରିଦେଇପାରେ, ସେ ହିଁ ପ୍ରକୃତରେ ବଡ଼ ମଣିଷ। ସଂସାରରେ କେତେ ମଣିଷ ଅଛନ୍ତି ଯେଉଁମାନେ ଅନ୍ୟର ଦୁଃଖ ଦାରିଦ୍ର୍ୟ ଦେଖି ସହି ପାରନ୍ତି ନାହିଁ। କାତର ହୋଇ ଈଶ୍ୱରଙ୍କୁ ପ୍ରାର୍ଥନା କରନ୍ତି ସେଥିରୁ ମଣିଷକୁ ମୁକ୍ତ କରିବା ପାଇଁ। କେତେ ମଣିଷ ଅନ୍ୟର ରୋଗ ଶୋକ ବିପଦରେ ପାଖରେ ପହଞ୍ଚି ଯାଆନ୍ତି। ସେମାନଙ୍କ ଉପସ୍ଥିତି ମନୁଷ୍ୟକୁ ବଳ ଦିଏ, ଅସହାୟତାରୁ ରକ୍ଷା କରେ। ସେମାନେ ନିଜ ଭିତରେ ଏପରି ସମାହିତ ହୋଇ ରହିଥାଆନ୍ତି ଯେ, ଜଗତଯାକର ସୌନ୍ଦର୍ଯ୍ୟ ସେମାନଙ୍କ ଦେହରେ ବିରାଜମାନ କରିଥାଏ। ଏମାନେ ସତରେ କେତେ ବଡ଼ ମଣିଷ ! ବହୁତ ବୁଦ୍ଧିମାନ ମଣିଷ ଯେ କି ଅଳ୍ପ ସମୟରେ ଲୋକ ସମୂହକୁ ବିଭ୍ରାନ୍ତ କରିଦେଇ ପାରେ ତା'ଠାରୁ ହୃଦୟବାନ୍ ମଣିଷ କେତେ ଉପକାରୀ ନୁହେଁ ସତେ ?

ସତ୍ୟଭାମା ବିଶ୍ୱାଳ, ଯାହାଙ୍କୁ ନ ଦେଖି ମଧ୍ୟ ମୁଁ କଳ୍ପନା କରି ପାରିଥିଲି ସେ କେମିତି ହେଇଥିବେ- ସତରେ ଦେଖିବା ପରେ ମୋର କଳ୍ପନା ସତ୍ୟରେ ପରିଣତ ହୋଇଥିଲା। ସଂସାରରେ ବଡ଼ ମଣିଷର ବ୍ୟାଖ୍ୟା ଦେବା ଅପେକ୍ଷା ତାଙ୍କୁ ଥରେ ଦେଖିଲେ ମନରେ ଯେଉଁ ଭାବନା ଆସିବ ତାହା ଦିବ୍ୟ ଈଶ୍ୱରୀୟ ଭାବନା। ଅତି ନାଟକୀୟ ଭାବରେ ତାଙ୍କର ଲେଖା ଗୋଟିଏ ବହି "ଯାହା ହଜାଇ ଦେଇଛି ଥରେ" ପାଇଲି। ସୁନ୍ଦର ପରିପାଟୀର ବହିଟି, ଘରେ ଆସି ପଢ଼ିବା ଆରମ୍ଭ କଲି ସନ୍ଧ୍ୟା ପ୍ରାର୍ଥନା

ପରେ। ମାତ୍ର ବହିଟିର ପଢ଼ା ବନ୍ଦ କରିଦେଇ ପାରିଲି ନାହିଁ। କେତେବେଳ ଯାଏ ପଢ଼ିଲି। ରାତିରେ ଶେଷ କଲି। ଫୋନ୍ କରିବି ବୋଲି ଭାବିବା ବେଳକୁ ରାତି ଦୁଇଟା। ସକାଳୁ ଫୋନ୍ କଲି, କଥା ହେଲି, ଭେଟିବା ପାଇଁ ଅନୁମତି ଲୋଡ଼ିଲି।

ବହିଟି ଅତି ଚମତ୍କାର। ନିଜର ଜୀବନୀ ଲେଖିବାର ଗୋଟେ ସୁନ୍ଦର ଶୈଳୀ ସେଇଠୁ ଆବିଷ୍କାର କଲି। ତାଙ୍କ ଜନ୍ମ ତାରିଖ ଦେଖି ଜାଣିଲି ଯେ ସେ ମୋ'ଠାରୁ ଆଠ ବର୍ଷ ବଡ଼। ଏମିତିରେ ମୋର ବଡ଼ ଭଉଣୀ କେହି ନାହାନ୍ତି। ମୋର ବଡ଼ବାପାଙ୍କର ଦୁଇ ବଡ଼ଝିଅ ଥିଲେ। ଦୁଇଜଣଙ୍କର କେବେଠୁ ଦେହାନ୍ତ ହୋଇଗଲାଣି। ମତେ ବୋଧହେଲା ମତେ ମୋର ବଡ଼ଭଉଣୀ ମିଳିଗଲା।

ତାଙ୍କ ଜୀବନୀକୁ ଅତି ତଲ୍ଲୀନ ହୋଇ ପଢ଼ିଛି। ପଢ଼ିବା ବେଳେ ଗାଁର ଦୃଶ୍ୟ ଆଖି ଆଗରେ ନାଚି ଉଠୁଥାଏ। ତାଙ୍କ ମାମୁଁଘର ଚଣ୍ଡିଆଗଡ଼ି। ତାଙ୍କ ବାପା ପ୍ରସିଦ୍ଧ ପାଲାଗାୟକ ଶ୍ରୀ ହରିନାଥ। ହରିନାଥ ମହୋଦୟ ଆମ ଗାଁ ତଥା ଆଖପାଖ ଗାଁରେ କେତେଥର ପାଲା ପରିବେଷଣ କରିଛନ୍ତି। ଗାଁର ଜୀବନ ଅତି ଚମତ୍କାର ଭାବରେ ସେ ବର୍ଣ୍ଣନା କରିଛନ୍ତି। ସେତେବେଳେ ଆଜି ଭଳି ଗାଁର ପରିବେଶ ନଥିଲା। ବିଜୁଳି ବତୀ ନଥିଲା, ରାସ୍ତାଘାଟ ନଥିଲା, ନଦୀନାଳ ବିପଦପୂର୍ଣ୍ଣ। ପୋଲ ନଥିଲା, ସ୍କୁଲ କଲେଜ ପ୍ରତ୍ୟେକ ଗାଁରେ ନଥିଲା। ସର୍ବୋପରି ଟଙ୍କା ପଇସାର ବଡ଼ ଅଭାବ ଥିଲା। ତଥାପି ଲୋକମାନେ ଗାଁ ଗହଳରେ ଖୁସିରେ ଥିଲେ। ଜମିବାଡ଼ିରୁ ମିଳୁଥିବା ଫସଲ ଓ ପନିପରିବା ପରିବାର ପାଇଁ ଯଥେଷ୍ଟ ଥିଲା, ଏକ ସାଂସ୍କୃତିକ ବାତାବରଣ ଭିତରେ ମଣିଷମାନେ ରହୁଥିବାରୁ କପଟୀ ନଥିଲେ। ସମସ୍ତଙ୍କ ପାଖରେ ଦୟା, କରୁଣା, ସ୍ନେହ, ଶ୍ରଦ୍ଧା ଥିଲା। ତାଙ୍କ ବହିରୁ ଏସବୁ କଥା ଜାଣିଲି।

ଅପାଙ୍କ ପାଠପଢ଼ା ଦାଣ୍ଡିସାହି ହାଇସ୍କୁଲ, ଶୈଳବାଳା ମହାବିଦ୍ୟାଳୟ, ଭଦ୍ରକ ମହାବିଦ୍ୟାଳୟ ଓ ସରକାରୀ ଟ୍ରେନିଂ କଲେଜ୍ ସମ୍ବଲପୁରରେ ସମାହିତ ହୋଇଛି। ପାଠ ପଢ଼ିବା ଭିତରେ ଭଦ୍ରକ କଲେଜ ତାଙ୍କୁ ଦେଇଛି ଅନେକ। ସେଇଠୁ ସେ ପାଇଥିଲେ ତାଙ୍କର ଜୀବନସାଥୀ। ଚାକିରି ଜୀବନର ପ୍ରାୟ ପଚିଶ ବର୍ଷ କଟାଇଥିଲେ ସୁଦୂର ସୁନ୍ଦରଗଡ଼ରେ। ସେଠାରେ ମୋ ପରିବାରର ୩ ଜଣ ଦାଦାଙ୍କ ସହିତ ତାଙ୍କର ଜଣାଶୁଣା ଥିଲା। ବଡ଼ଦାଦା ପ୍ରତାପ କିଶୋରଙ୍କ ବିଷୟରେ ମଧ୍ୟ ସେ ବହିରେ କେତେ କଥା ଲେଖିଛନ୍ତି। ମୋର ସହପାଠୀ ବନବିହାରୀ ମଧ୍ୟ ତାଙ୍କ ସହିତ ଶିକ୍ଷକତା କରୁଥିଲେ ସେହି ସୁନ୍ଦରଗଡ଼ରେ। ଏ ସବୁ ମିଶିଗଲା ପରେ ମୋତେ ଜଣାଗଲା

ଯେମିତି ଅପାକୁ ମୁଁ ବହୁ ଜନ୍ମ ଆଗରୁ ଜାଣିଚି। ମୋର ଯେମିତି ଅତି ପରିଚିତ।

ତାଙ୍କ ଜୀବନୀ ଭିତରେ ତାଙ୍କର ସବୁ ଶିକ୍ଷକ, କଲେଜର ଅଧ୍ୟାପକ ଓ ସହପାଠୀ ତଥା ସହପାଠିନୀମାନଙ୍କ କଥା ଅତି ଚମତ୍କାର ଭାବରେ ବର୍ଣ୍ଣନା କରିଛନ୍ତି। ଲେଖାଗୁଡ଼ିକ ଗଦ୍ୟରେ ହୋଇଥିଲେ ମଧ୍ୟ କବିତାର ଭାବ ତରଙ୍ଗରେ ରସାପ୍ଳୁତ - ଥରେ ପଢ଼ିଲେ ମନକୁ ଛୁଇଁ ଯାଏ। ତାଙ୍କ ବହିକୁ ମୁଁ ମୋର ଅନେକ ବନ୍ଧୁଙ୍କୁ ପଢ଼ିବାକୁ ଦେଇଛି ଓ ସମସ୍ତେ ତାଙ୍କର ପ୍ରଶଂସା ଗାନ କରିଛନ୍ତି।

କରୋନା କାଳରେ କେହି କାହାରି ଘରକୁ ଯାଉ ନଥିଲେ। ତେଣୁ ଅପେକ୍ଷା କରିବା ମୋ ପାଇଁ ଥିଲା କଷ୍ଟକର। ପ୍ରଥମ ଲହର ଶେଷରେ କିଛି କିଛି କଟକଣା ହୁଗୁଳା ହେଲା। ସେହି ଭିତରେ ଅପାଙ୍କୁ ଦେଖିବା ପାଇଁ ବାହାରିଲି। ମୁଁ ବାଟ ପାଇବି କି ନାଇଁ ଭାବି ଅପା ଆସି ତାଙ୍କ ଗେଟ୍ ପାଖରେ ଠିଆ ହୋଇଥାନ୍ତି। ମୁଁ କୁଆଡ଼େ ବାଟ ନ ଭୁଲି ସେଇ ଗେଟ୍ ପାଖରେ ଠିଆ ହୋଇ ଫୋନ୍ କଲି ଅପାଙ୍କୁ। ଦେଖାହେଲା। ମୁଁ ମୁହଁରୁ କରୋନା ମୁଖା ଖୋଲି ଅପାଙ୍କୁ ମୋ ମୁହଁ ଦେଖାଇ କହିଲି- ମୋତେ ଦେଖନ୍ତୁ।

ବହୁ ବର୍ଷ ପୂର୍ବେ ଦାସିଆ ଅଜା (ଉଦୟପୁର ପାଠାଗାରର ପ୍ରତିଷ୍ଠାତା) ଦାଶରଥି ପଟ୍ଟନାୟକ ପଣ୍ଡିଚେରୀସ୍ଥିତ ଶ୍ରୀଅରବିନ୍ଦ ଆଶ୍ରମକୁ ଯାଇଥିଲେ। ସେତେବେଳକୁ ତାଙ୍କୁ ଭଲ ଦିଶୁ ନଥାଏ। ଧାଡ଼ିରେ ମା'ଙ୍କ ପାଖକୁ ଯିବା ବେଳେ କେତେ ଜଣ ସହଯାତ୍ରୀ ପଚାରିଲେ- ତୁମେ ତ ଦେଖି ପାରୁ ନାହଁ। ମା'କୁ କେମିତି କ'ଣ ଦେଖିବ ? ସେ ଉତ୍ତର ଦେଇଥିଲେ 'ମା' ମୋତେ ଦେଖିବ, ମୁଁ ନ ଦେଖିଲେ କ'ଣ ହେଲା ?' ମୋର ଅପାକୁ ଦେଖିବା ବେଳେ ସେଇକଥା ମନେପଡ଼ିଲା, ମୁଖା କାଢ଼ିଦେଲି। ଅପା ମତେ ଭଲ କରି ଦେଖିଲେ।

ଅପାଙ୍କ ସହିତ କଥୋପକଥନରୁ ତାଙ୍କ ଜୀବନ କାହାଣୀ ଶୁଣିଲି। ମାନବ ଜୀବନ ତ ହସ କାନ୍ଦରେ ଭରା। ଜୀବନରେ ସୁଖ ବେଶି ଦୁଃଖ କମ୍। ମାତ୍ର ବସନ୍ତ, ହାଡ଼ଫୁଟି ଭଲ ହୋଇଗଲା ପରେ ମୁହଁରେ ଦେହରେ ଯେମିତି ଦାଗ ରଖି ଚାଲିଯାଏ ଦୁଃଖ ସେମିତି ମନରେ ଦାଗ ରଖି ଚାଲିଯାଏ। ସ୍ଥିର ମଣିଷ ତାକୁ ଦେଖି ସୁଦ୍ଧା ଦେଖେ ନାହିଁ। ଅପା ତାଙ୍କ ଜୀବନରେ ଗୋଟେ ବଡ଼ କାମ କରିଚନ୍ତି। ସେ ଗୁରୁ ଗ୍ରହଣ କରି ସାରିଛନ୍ତି। ସେ ସଦ୍‌ଗୁରୁ। ସବୁ ମଣିଷଙ୍କ ଭାଗ୍ୟରେ ଏକଥା ଜୁଟେନା। ଅପାଙ୍କ ନିକଟରୁ ଗୁରୁଙ୍କ କଥା ଶ୍ରବଣ କରି କୃତାର୍ଥ ହେଲି। ଅପା ଗୁରୁଙ୍କ ବିଷୟରେ ଏକ

ସୁନ୍ଦର ପୁସ୍ତକ ସମ୍ପାଦନା କରିଛନ୍ତି। ତାକୁ ଆଣିଲି। ତାଙ୍କର ଦ୍ୱିତୀୟ ପୁସ୍ତକ "ପେଡ଼ି ଆଳିମାଳିକା" ମଧ୍ୟ ଆଣିଲି।

ଅପା ଖୁବ୍ ଭାଗ୍ୟବତୀ। ପୁଅ ଚିନ୍ମୟ ଓ ଝିଅ ଚେତନା, ଦୁଇଟା ସୁନାମୁଣ୍ଡା। ବାପା, ବୈକୁଣ୍ଠ ବିଶ୍ୱାଳଙ୍କ ଅନୁସରଣରେ ଦୁଇଜଣଯାକ ଅର୍ଥଶାସ୍ତ୍ର ପଢ଼ିଛନ୍ତି। ଝିଅ ଶିକ୍ଷୟିତ୍ରୀ ଓ ପୁଅ ଭାରତୀୟ ପୁଲିସ୍ ସେବାର ଅଫିସର୍। ଦିଲ୍ଲୀ ସ୍କୁଲ ଅଫ୍ ଇକୋନୋମିକ୍ସ୍‌ରେ ବାପ ପୁଅ ଦୁହେଁ ପାଠ ପଢ଼ିଛନ୍ତି। ଝିଅ ଚେତନା ଉତ୍ତମ ସଂସ୍କାରର ଝିଅ। ତା' ବଡ଼ ଝିଅ ମଧ୍ୟ ଅର୍ଥଶାସ୍ତ୍ର ବିଷୟ ନେଇ କଲେଜରେ ପଢ଼ିଲାଣି। ଚେତନାର ସ୍ୱାମୀ ଅନୀଲ ଭାଇ ମଧ୍ୟ ଅର୍ଥଶାସ୍ତ୍ରର ଛାତ୍ର ଥିଲେ ଓ ବର୍ତ୍ତମାନ ସେ ଓଡ଼ିଶାର ଜଣେ ଖ୍ୟାତନାମା ବ୍ୟକ୍ତି। ଅପା ସବୁ ଦୃଷ୍ଟିରୁ ଜଣେ ସଫଳ ମଣିଷ ଓ ନିଜର ଜୀବନକୁ ଆନନ୍ଦରେ ବଞ୍ଚୁଥିବା ଏକ ମଣିଷ।

ଭଲ ମଣିଷ କ'ଣ ସେ ବିଷୟରେ ବର୍ଣ୍ଣନା ଯେତେ ଦେଲେ ମଧ୍ୟ ତାହା ଅପୂର୍ଣ୍ଣ। କେବଳ ଜଣେ ଭଲ ମଣିଷର ସଂସ୍ପର୍ଶରେ ଆସିଲେ ସେ କଥା ଆପେ ଜାଣି ହୋଇଯାଏ। ଗୁଡ଼ ବିଷୟରେ ବର୍ଣ୍ଣନା ଓ ନିଜେ ଗୁଡ଼ ଖାଇବା ଯେମିତି। ଅପାଙ୍କୁ ସେମିତି ମୁଁ ଜାଣିଲି। ସଂସାରରେ ସେ ଜଣେ ସାର୍ଥକ ମଣିଷ। ତାଙ୍କୁ ମୁଁ ସବୁବେଳେ ମନରେ ରଖିଛି। ଆମ ଘର ପାଖରେ ଜଣେ ମା' ଚଳପ୍ରଚଳ ହୁଅନ୍ତି, ମନ୍ଦିରକୁ ଯିବା ବେଳେ ଦେଖା ହୁଏ। ସେ ଅପାଙ୍କ ଭଳି ଦିଶନ୍ତି, ତାଙ୍କୁ ଦେଖିଲେ ମୋର ଅପାଙ୍କ କଥା ମନେପଡ଼େ। ଅପାଙ୍କ କବିତାଗୁଡ଼ିକ ପଢ଼େ, ତା'ଉପରେ ମନେ ମନେ ତର୍ଜମା କରେ।

ଅପାଙ୍କର ପୁଣି ଗୋଟିଏ ନୂଆ ବହି ବାହାରିବ। ମୁଁ ମଧ୍ୟ ସେଥିପାଇଁ ଉତ୍‌ଫୁଲ୍ଲିତ। ସେ ନିଶ୍ଚୟ ଆମକୁ ଅମୃତ ପରଶି ଦେବେ ବୋଲି ଭାବୁଛି କାରଣ ଅମୃତମୟୀ ଜଗତକୁ ଆଉ କ'ଣ ଅବା ଦିଅନ୍ତେ?

ସୁବାସ ଚନ୍ଦ୍ର ପଟ୍ଟନାୟକ

# ସୂଚୀପତ୍ର


୧. ଉତ୍ସର୍ଗ
୨. ପ୍ରକାଶକୀୟ
୩. ଅମୃତସ୍ରାବୀ ଲେଖନୀ.....
୪. ଅମୃତ ସାଗର ତୀରେ


## କଥା


୧. ବଣମଲ୍ଲୀର ପ୍ରେରଣା ........ ୧୫
୨. ମୁଢ଼ିବାଲା ଓ ରଜକଣ୍ଠ ........ ୧୭
୩. ମାନବିକତାର ମୂର୍ତ୍ତିମତୀ ........ ୨୦
୪. ସ୍ମୃତି କ୍ଷଣିକର ........ ୨୩
୫. ଡୋରି ଏମିତି ଲାଗେ ........ ୨୬
୬. ଦିବ୍ୟ ଆନନ୍ଦ ........ ୩୧
୭. ବଶିଷ୍ଠ ଯୋଗାଶ୍ରମ ଓ ଦୁର୍ଗାପୂଜା କୋଭିଡ୍ ୧୯ ........ ୩୫
୮. ରବିଦାଦାଙ୍କୁ ପ୍ରଣାମ ........ ୩୯
୯. ଚିନ୍ତାମଣିଙ୍କୁ ଚିଠି ........ ୪୩
୧୦. ରବିବାବୁ ଆଉ ଆସିବେ ନାହିଁ ........ ୪୫
୧୧. ସୁଭାଷ ନୁହେଁ ସୁବାସ ........ ୪୯
୧୨. କ୍ଷମା, ଧୈର୍ଯ୍ୟ ଓ ଅପେକ୍ଷା ........ ୫୧
୧୩. ବାକି ରହିଗଲା ରାଖୀ ........ ୫୪
୧୪. ବନ୍ଧବାହଲରେ ପଚିଶ ବର୍ଷ ........ ୫୮


## କବିତା


୧. ପ୍ରାର୍ଥନା ........ ୬୭
୨. ଗୁରୁ ପୂର୍ଣ୍ଣିମାରେ ଶ୍ରୀଗୁରୁଙ୍କୁ ନିବେଦନ ........ ୬୮
୩. ଗୁରୁ ବନ୍ଦନା ........ ୬୯
୪. ଗୁରୁଭଜ ନକରି ହେଲା ........ ୭୦
୫. ହରି ଭାଇଙ୍କୁ ........ ୭୧
୬. ବାର୍ତ୍ତା, ସୁବାସଙ୍କୁ ........ ୭୩
୭. ଦେଖୁ ଦେଖୁ କେବା ସହୁ ........ ୭୪
୮. ଫିକା ପାରବଣ ........ ୭୫
୯. କୋଭିଡ୍ ଓ କୁଆଁର ପୁନେଇ ........ ୭୬

୧୦. କୋଭିଡ୍ ୧୯ ........ ୭୭
୧୧. ପିଲାବେଳ ........ ୭୮
୧୨. ସମତା ........ ୭୯
୧୩. ବୟସ ........ ୮୦
୧୪. ନିରବତା ........ ୮୨
୧୫. ବିଜ୍ଞାନର ବିପରୀତ କ୍ରିୟା ........ ୮୪
୧୬. ନିଃଶବ୍ଦ ଦୀପାବଳି ........ ୮୬
୧୭. ଶୀତ ସକାଳ ........ ୮୭
୧୮. ଜରା ନା କାରା ........ ୮୮
୧୯. ମା' ........ ୯୦
୨୦. ସ୍ୱାଗତ ନୂଆ ବରଷ ୨୦୨୧ ........ ୯୧
୨୧. ପହିଲି ସକାଳ ୨୦୨୧ ........ ୯୨
୨୨. ଜନନୀ ଜନମଭୂମି ........ ୯୪
୨୩. ବାଣୀ ଆଗମନେ ........ ୯୫
୨୪. ମାଟି ମା'ର ଦୁଃଖ ........ ୯୭
୨୫. ଗୁରୁପଦ ଭଜରେ ମନ ........ ୯୮
୨୬. ଜଣାଣ ........ ୯୯
୨୭. ଗୃହିଣୀ ........ ୧୦୦
୨୮. ପଲ୍ଲୀ ସଞ୍ଜ ........ ୧୦୨
୨୯. ଶିବ ସ୍ତୁତି ........ ୧୦୪
୩୦. ରାମକୃଷ୍ଣ ମଠରେ 'ଶ୍ରୀରାମକୃଷ୍ଣ ଦିବସ' ........ ୧୦୫
୩୧. ରାମକୃଷ୍ଣ ମଠରେ 'ବ୍ରହ୍ମାନନ୍ଦ ଦିବସ' ........ ୧୦୬
୩୨. ଭୁଲନା ଶାଗକୁ ରୋଗକୁ ଭୁଲ ........ ୧୦୮
୩୩. ବୃକ୍ଷ ବଳି ........ ୧୧୦
୩୪. ଭାରତର ନାରୀ ........ ୧୧୨
୩୫. ବାଣୀପୁତ୍ର କୈଳାସ ........ ୧୧୪
୩୬. ଶ୍ରୀଗୁରୁଙ୍କ ସାନ୍ନିଧ୍ୟରେ ........ ୧୧୬
୩୭. ଅଭିନନ୍ଦନ ........ ୧୧୮
୩୮. ଦେବୀ ବନ୍ଦନା ........ ୧୧୯
୩୯. ମୁକ୍ତି ମୋର ଲୋଡ଼ା ନାହିଁ ........ ୧୨୦
୪୦. ନ ଦେଲେ ନ ଦିଅ ପଛେ ........ ୧୨୨

# ବଣ ମଲ୍ଲୀର ପ୍ରେରଣା

ବୁଢ଼ୀମା' କାହାଣୀ ପେଡ଼ି ଖୋଲିବା ଆଗରୁ ପଚାରିଦିଏ 'ଦୁଃଖ କହିବି ନା ସୁଖ କହିବି ନା ଅଙ୍ଗେ ଲିଭାଇବା କଥା କହିବି।' ଚାରି ପାଖରେ ଘେରି ବସିଥିବା ଉତ୍ସୁକ ଶ୍ରୋତା ମଣ୍ଡଳି ଏକାବେଳେ କହି ଉଠନ୍ତି 'ଅଙ୍ଗେ ଲିଭାଇବା କଥା'। ତେଣୁ ଅଙ୍ଗେଲିଭା କଥା ହିଁ କେବଳ ମନ ଓ ହୃଦୟକୁ ଛୁଇଁଥାଏ।

ମୁଁ ଯେଉଁ ବହି ଦୁଇଖଣ୍ଡ "ଯାହା ହଜାଇ ଦେଇଛି ଥରେ" ଓ "ପେଡ଼ି ଆଳିମାଳିକା" ପାଠକମାନଙ୍କ ହାତରେ ପରଷି ଦେଇଛି ସେ ସବୁ ମୋର ଅଙ୍ଗେ ଲିଭାଇବା କଥା। ବିତି ଯାଇଥିବା ଜୀବନର ବାସ୍ତବ ଚିତ୍ର। ଭାବିଥିଲି ସେତିକିରେ ମୋ କଥା ସରିଗଲା, ମାତ୍ର ଏବେ ଅନୁଭବ କରୁଛି ଫୁଲଗଛ ମରିନାହିଁ କି ମୋ କଥା ସରିନାହିଁ। ଶ୍ରୋତାମାନଙ୍କର ଦାବି ଆହୁରି କହିବାକୁ ପଡ଼ିବ ଯାହା ବାକି ଅଛି। ମୋ ଭଳି ଜଣେ ନଗଣ୍ୟ ବ୍ୟକ୍ତିର କଥାକୁ ଯେଉଁ ବନ୍ଧୁମାନେ ଶୁଣିବାକୁ ଆଗ୍ରହ ପ୍ରକାଶ କରିଛନ୍ତି ସେମାନଙ୍କ ଭିତରେ ପ୍ରଥମ ଶ୍ରେୟ ଦେବି ଶ୍ରୀ ସୁବାସ ଚନ୍ଦ୍ର ପଟ୍ଟନାୟକଙ୍କୁ। ମୁଁ ତାଙ୍କୁ ବହି ଦେଇନଥିଲି। ଅଚାନକ ବହି ଦୁଇଖଣ୍ଡ ତାଙ୍କୁ ମିଳି ଯାଇଥିଲା। ବହିପଢ଼ି ସେ ମୁଗ୍ଧ ହେଲେ। ତାଙ୍କର ବଡ଼ ଭଉଣୀର ଆସନରେ ମୋତେ ବସାଇଲେ। ସୁବାସତ ସ୍ଥିର ନୁହେଁ। ପ୍ରସରିଯିବା ତାର ଧର୍ମ। ତେଣୁ ସେ ମହକ କେତେବେଳେ ପହଞ୍ଚିଛି ଜାରକା ନିବାସୀ ଅଧ୍ୟାପକ ବନ୍ଧୁ ଶ୍ରୀ ସୁଶାନ୍ତ କୁମାର ପଣ୍ଡା (ସୁବାସ ପଟ୍ଟନାୟକଙ୍କ ବନ୍ଧୁ)ଙ୍କ ପାଖରେ, ପୁଣି କେତେବେଳେ ସ୍ପର୍ଶ କରିଛି ଡାକ୍ତର ଶ୍ରୀ ବିଜୟ କୁମାର ଦାସ ମହାଶୟଙ୍କୁ ଓ ଖାଡ଼ଙ୍ଗା ସାରଙ୍କୁ। ସେ ଦୁଇଜଣଯାକ ସୁବାସ ଚନ୍ଦ୍ରଙ୍କର ପଡ଼ୋଶୀ ବନ୍ଧୁ। ସୁବାସ ହିଁ ସେମାନଙ୍କୁ ମୋ ବହି ଦେଇଥିଲେ ପଢ଼ିବା ପାଇଁ। ସେମାନେ ବହି ପଢ଼ିଛନ୍ତି ଏବଂ ପାଠକୀୟ ସନ୍ତୋଷ ପ୍ରକାଶ କରିଛନ୍ତି। କେତେଜଣ ସହୃଦୟ ପାଠକ ଟେଲିଫୋନ୍‌ରେ କହିଛନ୍ତି "ଆପଣଙ୍କ ବାପାଙ୍କୁ କେବଳ ଜାଣିଥିଲୁ" ମାତ୍ର 'ପେଡ଼ି ଆଳିମାଳିକା' ଆମକୁ ଆପଣଙ୍କ ପରିବାର ବିଷୟରେ ଜଣାଇଦେଲା।" ବହିପଢ଼ି ନାନୀ (ସରକଣା ହାଇସ୍କୁଲର ପ୍ରଧାନ ଶିକ୍ଷକ ୰ବାଇଧର ସାହୁଙ୍କ ସ୍ତ୍ରୀ) କହିଲେ

"ଆଗରୁ କାହିଁକି ଲେଖିଲ ନାହିଁ, ସାର୍ ପଢ଼ିଥିଲେ କେତେ ଖୁସି ହୋଇଥାନ୍ତେ। ତମ ଉପରେ ନିଶ୍ଚୟ ସରସ୍ୱତୀଙ୍କର ଆଶୀର୍ବାଦ ରହିଛି।" ଶ୍ରୀଯୁକ୍ତ ପ୍ରତାପ କିଶୋର ପଟ୍ଟନାୟକ କହିଲେ "ତମେ କ'ଣ ଲେଖାର ମୂଲ୍ୟାୟନ କରିପାରିବ ? ଯଦି ସମାଜରେ ଜଣେ ବ୍ୟକ୍ତିର ମନକୁ ତାହା ଛୁଇଁ ପାରିଲା ତାହେଲେ ଲେଖା ସାର୍ଥକ ହୋଇଛି ବୋଲି ଜାଣିବ। ତମ ଲେଖା ଗୁଡ଼ିକ ବହୁତ ଭଲ ଲାଗୁଛି"। ବିଶିଷ୍ଟ ଶିକ୍ଷାବିତ୍ ଡକ୍ଟର ଚକ୍ରଧର ବିଶ୍ୱାଳ ଟେଲିଫୋନ୍‌ରେ କହିଥିଲେ "ଆପଣଙ୍କ କବିତା ଗୁଡ଼ିକ ନିଜସ୍ୱ ଢଙ୍ଗରେ ଲିଖିତ। ମୁଁ ମୋର ପାଠକୀୟ ସନ୍ତୋଷ ପ୍ରକାଶ କରୁଛି"।

କବି ଶ୍ରୀ ଚିନ୍ତାମଣି ମହାଳିକ କହିଥିଲେ "ଆପଣଙ୍କ ବହି ଦୁଇଖଣ୍ଡରୁ କବିତା ଗୁଡ଼ିକୁ ଅଲଗା କରିଦେଲେ ଏହା ଏକ ଉଚ୍ଚମାନର ଆତ୍ମଜୀବନୀ"। ରାମକୃଷ୍ଣ ମିଶନ ବିବେକାନନ୍ଦ ସ୍କୁଲର ଶିକ୍ଷକ ଶ୍ରୀ ସୁରେଶ ଚନ୍ଦ୍ର ଦେଓଙ୍କ ମତରେ କବିତା ଗୁଡ଼ିକ ପିଲାଙ୍କ (ସପ୍ତମ ଶ୍ରେଣୀ ପର୍ଯ୍ୟନ୍ତ) ପାଇଁ ଅତ୍ୟନ୍ତ ଉପାଦେୟ ହୋଇଛି।

ବନ୍ଧୁ ଶ୍ରୀଯୁକ୍ତ ହରମୋହନ ମିଶ୍ର ଥରେ ମୋତେ ପ୍ରଶ୍ନ କରିଥିଲେ "ଆପଣଙ୍କ ଲେଖାଗୁଡ଼ିକ କ'ଣ ବଣମଲ୍ଲୀ ପରି ନିଭୃତରେ ମଉଳିଯିବ ?" ତାଙ୍କରି ପ୍ରଶ୍ନରୁ ଆଜି ଏ "ଭିନ୍ନ ବଣମଲ୍ଲୀ"ର ଆତ୍ମପ୍ରକାଶ ଏବଂ ଏହା ମୋର ପାଠକମାନଙ୍କ ହାତରେ ତୃତୀୟ ନୈବେଦ୍ୟ।



# ମୁଢ଼ିବାଲା ଓ ରଜ କଷ୍ଟ

ସପ୍ତାହାନ୍ତ ବନ୍ଦ(ସଟ୍ ଡାଉନ୍)ର ପୂର୍ବଦିନ। ସମୟ ପ୍ରାୟ ଅପରାହ୍ଣ ଚାରିଟା ହେବ। ଟାଣ ଖରା ମଉଳି ଗଲାଣି। ଆକାଶରେ ବାଦଲର ସମାରୋହ। ପବନର ଗତି ଧୀର ମନ୍ଥର। ଘର ଭିତରେ ରହିବାକୁ ଇଚ୍ଛା ହେଲା ନାହିଁ। ବାହାରେ ବସି ବୈଶାଖର ଅପରାହ୍ଣକୁ ଲକ୍ଷ୍ୟ କରୁଥିଲି। ଭାବୁଥିଲି ମୁଢ଼ିବାଲାର କଥା। ବେଶ୍ କିଛିଦିନ ତଳେ ମୁଢ଼ି ଦେଲାବେଳେ କହି ଯାଇଥିଲା, "ଆଉ କାହାରିଠାରୁ ମୁଢ଼ି ରଖିବ ନାହିଁ ମା', ମୁଁ ଠିକ୍ ସମୟରେ ଆସି ଯୋଗେଇ ଦେବି।" ଏଇ କଥା ବସି ଭାବୁଛି ଦୂରରୁ ଶୁଭିଲା ମୁଢ଼ିବାଲାର ସ୍ୱର। "ମୁଢ଼ିଇଇଇ, ମୁଉଉଢ଼ି, ଆଇଲା ଜଗାପୁଅ ମୁଢ଼ିବାଲା ଜଗନ, ମମି ଓପରେ କ'ଣ ମୁଢ଼ି ରହିବ ?" ଏ ହେଉଛି ମୁଢ଼ିବାଲାର ଅନନ୍ୟ ଶୈଳୀ, ଯେଉଁ ଢଙ୍ଗରେ ସେ ଗ୍ରାହକମାନଙ୍କୁ ଆକର୍ଷଣ କରିଥାଏ। ମନ ମୋର ଖୁସି ହୋଇଗଲା। ମୁଢ଼ିବାଲା କଥା ଭାବୁ ଭାବୁ ମୁଢ଼ିବାଲା ପହଞ୍ଚିଗଲା। ମନକୁ ଆସିଗଲା ଭାବନା- ଇଏ କ'ଣ ସେଇ କଥା ହେଲା ? "ଏ ମନ ପାଞ୍ଚୁଥାଏ ଯାହା, କାଳେ ପ୍ରାପତ ହୁଏ ତାହା"। ଗେଟ୍ ପାଖକୁ ଗଲି। ଦେଖିଲି ଟିକେ ଦୂରରେ ଥିବା କଲୋନୀ ଭିତରେ ମୁଢ଼ି ଦେଇସାରି ସେ ଆମ ଘର ଆଡ଼େ ଗାଡ଼ି ବୁଲାଉଛି। ମୋତେ ଦେଖି ଖୁସି ହୋଇଗଲା। କହିଲା, "ମା', ଆଜି ଗୋଟିଏ ନୁହେଁ, ଦି'ଟା ଯାକ ଡବା ଆଣ।" ଇଚ୍ଛା ନଥିଲେ ବି ତା' ଇଚ୍ଛାରେ ବାଧା ଦେବାକୁ ସାହସ କୁଳାଇଲା ନାହିଁ। ପଚାରିଲି, ଆଜି ଅବେଳରେ କେମିତି ଆସିଲ ? ସେ କହିଲା, କାଲି, ପହରି ପରା ବନ୍ଦ। ମୁଢ଼ି ଦି'ଟା ପାଇଁ ଗରାଖ ହନ୍ତସନ୍ତ ହେବେ, ତେଣୁ ଖରାଏ ଖରାଏ ଚାଲି ଆସିଲି। କଥାବାର୍ତ୍ତା ଭିତରେ ଦି'ଟାଯାକ ଡବାକୁ ଯାକି, ହଲେଇ ଦେଉଳିଆ କରି ମୁଢ଼ି ଭର୍ତ୍ତି କଲା। ସେତିକି ଥାଉ, ଡବାର ଖୋପ ଦେଇ ହେବ ନାହିଁ କହିଲେ ବି ସେ ଦିଗକୁ ତା'ର ନିଘା ନାହିଁ। ଶହେ ଟଙ୍କିଆ ନୋଟ୍ ଖଣ୍ଡେ ବଢ଼ାଇ ଦେଲି। ଦୁଇଟି ଦଶ ଟଙ୍କିଆ କଏନ୍ ମୋ ହାତକୁ ବଢ଼ାଇ ଦେଇ ଗାଗୁ (ମୋ ଝିଅର ସାନପୁଅ)କୁ କହିଲା, "ତମେ ବହୁତ ପାଠ ପଢ଼ିବ, ଆମ ଗାଁରେ ଚାକିରି କରିବ, ମୋ ଦୁଃଖ ନେବ"।

କଥାଗୁଡ଼ାକ ମୋତେ ଅସ୍ୱାଭାବିକ ଲାଗୁ ଥିଲେ ବି ଏହା ପଛରେ ମୋ ପ୍ରତି ତା' ଅନ୍ତରରେ ଥିବା ଶ୍ରଦ୍ଧା ଯେ ସୁସ୍ପଷ୍ଟ ତାହା ମୁଁ ଅନୁଭବ କରୁଥିଲି। ଆଗରୁ ଶୁଣିଥିଲି ବିବାହର ବହୁତ ବର୍ଷ ପରେ ତା'ର ଝିଅଟିଏ ହୋଇଥିଲା। ପଚାରିଲି ତୁମ ଝିଅକୁ କେତେ ବର୍ଷ ? କହିଲା, "ଦଶ ବର୍ଷ। ପଞ୍ଚମରେ ପଢୁଛି। ଏଇ ତମରି ନାତି ବୟସର ହେବ।" ମନରେ ଆଙ୍କି ହୋଇଗଲା କବିଗୁରୁ ରବୀନ୍ଦ୍ରନାଥଙ୍କ ପ୍ରସିଦ୍ଧ ଗପ "କାବୁଲିବାଲା"ର ମିନି ଚରିତ୍ର। ସୁଦୂର ଆଫଗାନିସ୍ଥାନରେ ଛାଡ଼ି ଆସିଥିବା ତା' ଛୋଟ ଝିଅଟିକୁ ପାଞ୍ଚ ବର୍ଷର ଝିଅ ମିନି (ଗପର ନାୟିକା) ଭିତରେ ଦେଖୁଥିଲା କାବୁଲିବାଲାଟି।

ମୁଢ଼ିବାଲାଟି କେବେ ଆମ ଘରେ ପ୍ରଥମେ ମୁଢ଼ି ଦେଇଥିଲା ମୋର ମନେ ନାହିଁ। ସେ କିନ୍ତୁ କହେ ବହୁତ ଦିନ ହେଲା ସେ ମୁଢ଼ି ଦେଇ ଆସୁଛି। ଆମକୁ ମୁଢ଼ି ଦେଲେ ତା'ର ଭାରି ଆନନ୍ଦ। ମୁଢ଼ି ଅଛି, ଆଜି ଦରକାର ନାହିଁ କହିଲେ ଅଭିମାନରେ କହେ- "ମୋତେ କ'ଣ ମାରିଦେବ ନା କ'ଣ ?" ଆଗରୁ କେତେ ଥର ତା' ସାଙ୍ଗରେ ଦୁଃଖସୁଖ ହୋଇଛି। ମୁଢ଼ି ଦେବାକୁ ଆସିଲେ ଘର ବାରଣ୍ଡାରେ କିଛି ସମୟ ବସେ। ଶୋଷ ହେଉଥିଲେ ପାଣି ପିଏ। ବାଡ଼ିରୁ ପଶାରୁଣି ପତ୍ର ତୋଳି ବେଳେ ବେଳେ ନେଇଥାଏ ତା' ଆଣ୍ଠୁ ଦରଜ କମିବ ବୋଲି। ମୋର ନିଃସଙ୍ଗ ଜୀବନ ପ୍ରତି ସହାନୁଭୂତି ଜଣାଏ। ପିଲାମାନେ ମଣିଷ ହେଲେ ଦୁଃଖ ଚାଲିଯିବ କହି ମୋତେ ଆଶ୍ୱାସନା ଦିଏ। ମୋ ପୁଅଝିଅଙ୍କର ଭଲମନ୍ଦ ଖବର ପଚାରି ବୁଝେ। ସେ ଢେଙ୍କାନାଳର ଲୋକ ବୋଲି ଜାଣିଥିଲି। ସେଦିନ ପଚାରିଲି ମୁଢ଼ି ବିକ୍ରିରେ ତମର କେତେ ଲାଭ ହେଉଛି ? ଗୁଜୁରାଣ ମେଣ୍ଟି ଯାଉଛି ମା', ଅନ୍ତୋଦୟ ଚାଉଳ ମିଳୁଛି। ତା' ସାଙ୍ଗକୁ ଯାହା ଦି' ପଇସା ହେଉଛି ସେଥିରେ ତେଲଲୁଣ ଚଳି ଯାଉଛି। ବେଳେବେଳେ କାମନିମନ୍ତ ପଡ଼ିଲେ ପାଞ୍ଚ ସାତ ହଜାର ଧାର କରଜ ହୋଇ ଯାଉଛି। ଏଇ ମୁଢ଼ି ବିକାରୁ କ'ଣ ଧାର ଶୁଝି ପାରୁଛ, ପଚାରିଲି। ବେଳେବେଳେ ସୁଧ ଦେବାକୁ ପଡୁଛି ମା'। ଏତେ ବର୍ଷ ବ୍ୟବସାୟ କରି ଆଉ କ'ଣ ମୂଲ ମଜୁରି କରି ହେବ ? ଭୁବନେଶ୍ୱରରୁ ତା' ଘର ଠିକ୍ ଶହେ କିଲୋମିଟର। ଏବେ ସେ ଲୁନା ଗାଡ଼ିରେ ମୁଢ଼ି ବସ୍ତା ଧରି ଆସୁଛି। କେଜାଣି କାହିଁକି ମୁଢ଼ିବାଲା ଆମକୁ ମୁଢ଼ି ଦେଲେ ଡବା ପ୍ରତି ପାଞ୍ଚ ଟଙ୍କା କମ୍ ନିଏ, ତା'ର ଅନ୍ୟ ସହ ବ୍ୟବସାୟୀଙ୍କ ତୁଳନାରେ। ଏ କଥା ବହୁତ ଦିନ ପରେ ଜଣା ପଡ଼ିଲା। ମୋର ମନେପଡୁଛି ମୁଢ଼ି ଡବାର ଦାମ୍ ୩୦ଟଙ୍କା ଥିଲା ବେଳେ ସେ ଆମଠାରୁ ନେଉଥିଲା ପଚିଶ ଟଙ୍କା। କେତେ କହିଲା ପରେ ସେ ରଜପର୍ବକୁ କଣ୍ଟ

ଦିଏ। ରଜ ପରେ ଅଧିକା ନେବି ବୋଲି କହି କଥା ଏଡ଼େଇ ଦିଏ। ତା'ର କଷ୍ଟ ଅନୁସାରେ ଦରବଢ଼ି ଏବେ ମୁଢ଼ି ଡବା ଚାଳିଶ ଟଙ୍କାରେ ପହଞ୍ଚିଛି। ଅନ୍ୟମାନେ ପଚାଶ କି ପଇଁଚାଳିଶ ଟଙ୍କା ନେଉଛନ୍ତି। ସେଦିନ ମୁଢ଼ି ରଖିଲା ବେଳେ ମୋ ଝିଅ କହିଲା, "ରମେଶ, (ଛଦ୍ମନାମ), ତମେ ମୁଢ଼ି ଦାମ୍ ଆମଠୁଁ କମ୍ କାହିଁକି ନେଉଛ ?" ସେ କହିଲା, "ସେ କଥା କୁହନା, ମୁଁ ତମକୁ କେତେ ବର୍ଷ ହେଲା ମୁଢ଼ି ଦେଉଛି। ତମ ପାଖରେ ଦର ବଢ଼ାଇବି ? ମୋତେ ଭଗବାନ ବହୁତ ଭଲରେ ରଖିଛନ୍ତି। ଆଗରୁ ମୁଣ୍ଡରେ ବୋଝ ବୋହି ଖରାତରାରେ ଗାଁ ଗାଁ ବୁଲୁଥିଲି। ଏବେ ଲୁନା ଚଢୁଛି। ଶରୀର ସୁସ୍ଥ ନଥିଲେ କ'ଣ ହେଲା ପ୍ରଭୁ ମୋତେ ଶଯ୍ୟାଶାୟୀ କରି ନାହାନ୍ତି। ମୁଁ ଚଳପ୍ରଚଳ ହୋଇ ପାରୁଛି। କନ୍ୟା ସନ୍ତାନଟିଏ ହେଲେ ମଧ୍ୟ ମୋତେ ପିତୃତ୍ୱର ଅଧିକାର ଦେଇଛନ୍ତି। ଆଉ ମୋର କିଛି ଦରକାର ନାହିଁ। ଏଇମିତି ତାଙ୍କୁ ଡାକି ଡାକି ଜୀବନ ସରିଯାଉ।" କି ଆତ୍ମସନ୍ତୋଷ ! ଭଗବାନଙ୍କ ପ୍ରତି କି ଅନନ୍ୟ କୃତଜ୍ଞତା ଭାବ ! ସରଳ ନିରକ୍ଷର ଗ୍ରାମୀଣ ମଣିଷଟିଏ। ଅଭାବ ସଂସାର ଭିତରେ ଥାଇ ମଧ୍ୟ ତା' ହୃଦୟରେ କି ବିମଳ ସାଧୁତା। ଆମେ ସଭ୍ୟ ଶିକ୍ଷିତ ସମାଜରେ ଗଣା ହେଲେ ମଧ୍ୟ ଆଖି ଆଗରେ 'ଆଶା'ର ଲମ୍ବା ଧାଡ଼ି। ରମେଶ କଥା ଅନେକ ଥର ଭାବିଛି। କାହିଁକି ତା'ର ମୋ ପ୍ରତି ଏତେ ଆନ୍ତରିକତା ? ମୋର ନିଃସଙ୍ଗ ଅସହାୟ ଜୀବନର କାହାଣୀ ସେ ଶୁଣିଛି। ପିଲାଦି'ଟାଙ୍କୁ ମଣିଷ କରିବାକୁ ମୋର ଯେଉଁ ସାଧନା ସେ ତାହା ଲକ୍ଷ୍ୟ କରିଛି। ତେଣୁ ଅଚିହ୍ନା, ଅପରିଚିତ ହେଲେ ମଧ୍ୟ ତା' ଦରଦୀ ହୃଦୟରେ ଥିବା ମହତ ପଣିଆ ହିଁ ତାକୁ ମୋର ନିକଟତର କରାଇଛି। ରମେଶ ପରି ଆଶା ରହିତ ସରଳ ମନଟିଏ ଦିଅ ପ୍ରଭୁ। ଆଉ କିଛି ଦରକାର ନାହିଁ। ରମେଶ କଷ୍ଟ ଦେଇଛି ଏ ବର୍ଷ ରଜ ଆସିଲେ ମୁଢ଼ି ଡବାର ଦାମ୍ ବଢ଼ାଇବ। ତା'ର ରଜକଷ୍ଟକୁ ଚାହିଁ ରହିଛି।



# ମାନବିକତାର ମୂର୍ତ୍ତିମତୀ

ଆଜି ଚଇତ୍ର ମାସର ପ୍ରଥମ ମଙ୍ଗଳବାର । ମା' ମଙ୍ଗଳାଙ୍କର ପୂଜାର୍ଚ୍ଚନାର ଦିନ । ସକାଳୁ ସକାଳୁ ମହିଳାମାନେ ମା'ଙ୍କର ପ୍ରିୟ ପୁଷ୍ପ ମନ୍ଦାର ସଂଗ୍ରହ କରିବାରେ ବ୍ୟସ୍ତ । ମା', ଦିବ୍ୟ ଜନନୀ, ଜଗଜ୍ଜନନୀ, ମଙ୍ଗଳମୟୀ ସଦା ମଙ୍ଗଳକାରିଣୀ, ମଣିଷ ହୃଦୟରେ ତାଙ୍କର ବିଭିନ୍ନ ପ୍ରକାଶ । କେତେବେଳେ ସେ ଦୟା, କେତେବେଳେ ସେ କ୍ଷମା, କେତେବେଳେ ସେ ଶାନ୍ତି ପୁଣି କେତେବେଳେ ସେ ଭ୍ରାନ୍ତି । କେତେବେଳେ ସେ ଭକ୍ତି ତ କେତେବେଳେ ସେ ଜ୍ଞାନ । ସେ ଶତରୂପା, ସେ ବିଶ୍ୱରୂପା । ମନେମନେ ପ୍ରାର୍ଥନା ଜଣାଇଲି, 'ମା' ଆଜି ଦିନଟି ଶୁଭେ ଶୁଭେ କଟିଯାଉ ।' ଏମିତି ଏକ ପବିତ୍ର ଦିନ ଥିଲା ଫେବୃୟାରୀ ମାସ ୨୧ ତାରିଖ । ଶ୍ରୀମା'ଙ୍କ ଜନ୍ମଦିନ, ଯାହାକୁ ଅନୁଗତମାନେ 'ମାତୃ ଦିବସ' ରୂପେ ପାଳନ କରିଥାନ୍ତି । ସେଦିନ ଜଣେ ବିଜ୍ଞ ବ୍ୟକ୍ତିଙ୍କ ସହିତ ମୋର ପରିଚୟ ହୋଇଥିଲା । ସେ ମୋତେ ମା'ର ଆସନ ଦେଇଛନ୍ତି । କାଲି ରାତିରେ ତାଙ୍କ ସାଙ୍ଗରେ ଟେଲିଫୋନ୍‌ରେ କଥା ହେଉଥିଲି । କଥାବାର୍ତ୍ତା ଭିତରେ ସେ କହିଲେ, "ମା', ଦୁନିଆରେ ଆଜି ସବୁ ଜିନିଷ ବଢ଼ି ବଢ଼ି ଚାଲିଛି । ଧନ, ଜନ, ମାନ, ଉପାର୍ଜନ, ଭୋଗବିଳାସ, ନିଶା ଇତ୍ୟାଦି ଇତ୍ୟାଦି । ମାତ୍ର ଗୋଟିଏ ଜିନିଷ କ୍ରମେ କମି କମି ଯାଉଛି । ତାହା ହେଉଛି ମଣିଷକୁ ଭଲ ପାଇବା ।" ମୁଁ କହିଲି, କମି ଯାଉଛି ସତ, ମାତ୍ର ହଜି ଯାଉ ନାହିଁ । କେଉଁଠି ନା କେଉଁଠି ସେ ଦିବ୍ୟ ଗୁଣର ଝଲକ ନିଶ୍ଚୟ ପ୍ରକାଶ ପାଉଛି ।" ରାତିର ସେ ଆଲୋଚନା ବିଷୟରେ ଝିଅ (ଚେତନା) ସାଙ୍ଗରେ କଥା ହେଲି । ମନେପଡ଼ିଗଲା 'ରୁବି' କଥା । ରୁବି, ମୋ ଝିଅର ସାଙ୍ଗ । ତା'ର ଭଲ ନାଁ ହେଉଛି ଶ୍ୱେତପଦ୍ମା । ଦେଖିବାକୁ ବହୁତ ଗୋରା ବୋଲି ଗାଁରେ ତାକୁ ଗୋରୀ ବୋଲି ଡାକନ୍ତି । ମୁଁ କହୁଛି ୧୯୯୮ ମସିହା କଥା । ମୋ ଜୀବନର ଏକ ଅଙ୍ଗେ ଲିଭା ଘଟଣା । ଅଠାନବେ ମସିହାର ଗ୍ରୀଷ୍ମାବକାଶ ସମୟ । ମେ ମାସ । ଗ୍ରୀଷ୍ମାବକାଶ ପାଇଁ ସ୍କୁଲ ବନ୍ଦ ଥାଏ । ତେଣୁ ମୁଁ ଭୁବନେଶ୍ୱରରେ ଥାଏ । ସେତେବେଳେ ମୁଁ ସୁନ୍ଦରଗଡ଼ ଜିଲ୍ଲାର 'ବନ୍ଧବାହାଲ ବାଳିକା ବିଦ୍ୟାଳୟ'ରେ ଶିକ୍ଷୟିତ୍ରୀ ଥିଲି । ସେହି ବର୍ଷ ପ୍ରଥମ

କରି ଓଡ଼ିଶାବାସୀ 'ଅଂଶୁଘାତ'ର ସମ୍ମୁଖୀନ ହେଲେ। 'ଅଂଶୁଘାତ' ଯେ ଜୀବନ ଘାତକ ହୋଇଥାଏ ଆଗରୁ ଲୋକମାନେ ତାହା ଜାଣି ନଥିଲେ। ସେହି ଦାରୁଣ ଅଂଶୁଘାତରେ ମୋ ଜୀବନର ମୋଡ଼ ବଦଳିଗଲା। ମୋ ଜୀବନ ଆକାଶରେ ଅନ୍ଧକାର ଘୋଟି ଆସିଲା। ପିଲା ଦି'ଟା (ମୋ ପୁଅ, ଝିଅ)ଙ୍କ ମୁଣ୍ଡ ଉପରୁ ବାପର ହାତ ଖସିଗଲା। ପାଠପଢ଼ା ସରି ନଥାଏ। ପୁଅ ତା' ବାପାଙ୍କ ପାଖରେ ରହି ବି.ଜେ.ବି. କଲେଜରେ ପଢୁଥାଏ। ଝିଅ ରମାଦେବୀ କଲେଜରେ ହଷ୍ଟେଲରେ ରହୁଥାଏ। ହଠାତ୍ ଏ ବିପଦ ! କ'ଣ କରିବୁ, କେମିତି ରହିବୁ ଭାବି ଭାବି କିଛି ଥଳକୂଳ ମିଳୁ ନଥାଏ। ଏମିତି ଅସହାୟ ଅବସ୍ଥାରେ ଗ୍ରୀଷ୍ମ ଛୁଟି ସରିଗଲା। ସ୍କୁଲ ଖୋଲିଲା। ଛୁଟି ପରେ ସ୍କୁଲରେ ଜଏନ୍ କରିବା ନିହାତି ଦରକାର। ଯିବା ପାଇଁ ମନରେ ବଳ ନଥାଏ। କେମିତି ସାଙ୍ଗସାଥୀମାନଙ୍କର ଓ କ୍ଲାସରେ ଛାତ୍ରୀମାନଙ୍କର ସମ୍ମୁଖୀନ ହେବି ଭାବି ଭାବି ଅନ୍ତର ଫାଟି ପଡୁଥାଏ। ୪୦୦/୫୦୦ କିଲୋମିଟର ଦୂର ବାଟ। ସ୍କୁଲରେ ଜଏନ୍ କରି ଛୁଟି ଦରଖାସ୍ତ ଦେଇ ଫେରି ଆସିବାକୁ ଅନ୍ତତଃ ଗୋଟିଏ ସପ୍ତାହ ଲାଗିଯିବ। ପିଲାମାନେ ଏକୁଟିଆ ରହିବା ମଧ୍ୟ ନିରାପଦ ନୁହେଁ। ଶେଷରେ ସ୍ଥିର ହେଲା ଝିଅ ମୋ ସାଙ୍ଗରେ ଯିବ। ପୁଅ ଏକୁଟିଆ ଘରେ ରହିବ। ଆମ ଘରର ପରିବେଶ ସମ୍ପର୍କରେ ସାମାନ୍ୟ ସୂଚନା ଦେଉଛି। ଘରଟି ଆର୍ଯ୍ୟ ଋଷିକୁଳ ବଶିଷ୍ଠ ଯୋଗାଶ୍ରମର ଦୁର୍ଗାମନ୍ଦିର ପରିସରରେ ଅବସ୍ଥିତ। ପାଖରେ ସାଇପଡ଼ିଶା ବୋଲି କେହି ନାହାନ୍ତି। ଅତ୍ୟନ୍ତ ନିର୍ଜନ ଓ ନିକାଞ୍ଚନ ପରିବେଶ। ୧୯୯୮ ମସିହାରେ ଘର ଚାରିପାଖରେ ଆକାଶିଆ, କାଜୁ, ଲିମ୍ବ, ଇଉକାଲିପଟାସ୍, ଶାଗୁଆନ୍, ଗମ୍ଭାରୀ ଇତ୍ୟାଦି ଗଛଗୁଡ଼ିକ ଏମିତି ଛନ୍ଦାଛନ୍ଦି ହୋଇ ଘେରି ରହିଥାନ୍ତି ଯେ ଦେଖିଲେ ମନେହେବ ତପୋବନ ଭିତରେ କୌଣସି ଏକ ମୁନୀ ଆଶ୍ରମ। ବେଳେ ବେଳେ କେହି କେହି ବନ୍ଧୁ ମଧ୍ୟ ଏ ପ୍ରକାର ମନ୍ତବ୍ୟ ଦେଇଥାନ୍ତି। ୧୯୯୯ ମସିହାର 'ମହାବାତ୍ୟା'ରେ ବୃକ୍ଷଗୁଡ଼ିକ ସତ୍ତା ହରାଇ ଘରଟିକୁ ଶ୍ରୀହୀନ କରି ଛାଡ଼ି ଯାଇଛନ୍ତି। ଏମିତି ନିଛାଟିଆ ଘରେ ପୁଅ ରାତିରେ କେମିତି ଏକୁଟିଆ ରହିବ ଭାବି ଭାବି ମୋ ଛାତି ଫାଟି ଯାଉଥାଏ।

ବାବା (ମୋର ଗୁରୁଦେବ ଶ୍ରୀମଦ୍ ଜୟଦେବ ବ୍ରହ୍ମଚାରୀ) ଅଭୟ ଦେଇ କହିଲେ, "ବାବୁ ପୁରୁଷ ପିଲା, ତା'ର ଡର କାହାକୁ ? କିଛି ଅସୁବିଧା ହେବ ନାହିଁ, ତୁମେ ଯାଅ।" ଝିଅକୁ ସାଙ୍ଗରେ ନେଇ ମୁଁ ସୁନ୍ଦରଗଡ଼ ଗଲି। ପୁଅ ଏକା ଘରେ ରହିଲା। ସେହିଦିନ ସନ୍ଧ୍ୟାବେଳେ 'ରୁବି' ଆସି ଆମ ଘରେ ପହଞ୍ଚିଲା। ରୁବିର

ପରିଚୟ ଆଗରୁ ଦେଇଛି। ମୋ ଝିଅ ଚେତନାର ସାଙ୍ଗ ସେ। ରମାଦେବୀ କଲେଜ ହଷ୍ଟେଲରେ ସେ ମଧ୍ୟ ରହୁଥିଲା। ତା'ର ଉଦ୍ଦେଶ୍ୟ ଥିଲା ଚେତନାକୁ ଦେଖା କରି ଦେଇ ତା' ନିଜ ଘରକୁ ଯିବ। ଚେତନା ମୋ ସାଙ୍ଗରେ ସୁନ୍ଦରଗଡ଼ ଯିବା କଥା ସେ ଜାଣି ନ ଥିଲା। ଘରେ ପହଞ୍ଚି ଦେଖିଲା ଘର ନିର୍ଜନ। ଚେତନା ନାହିଁ କି ମୁଁ ନାହିଁ। ବାବୁ ଏକୁଟିଆ ଦାଣ୍ଡଘରେ ବସିଛି। ତା' ମୁହଁରେ ହସ ନାହିଁ କି ପାଟିରେ ଭାଷା ନାହିଁ। ବାବୁର ଏ ଅବସ୍ଥା ଦେଖି ରୁବି ହୃଦୟରେ କି ଭାବନା ଆସିଥିବ ମୁଁ କହି ପାରିବି ନାହିଁ। ମାତ୍ର ସେଦିନ ସେ ବାବୁକୁ ଏକୁଟିଆ ଛାଡ଼ି ଘରକୁ ଯାଇ ପାରିଲା ନାହିଁ। ରାତିରେ ରହିଲା। ବାବୁ ଦେହରେ ଜୀବନୀ ଶକ୍ତି ସଞ୍ଚାର ହେଲା। ଦୁହେଁ ରୋଷେଇ କରି ଖାଇଲେ। ତା' ପରଦିନ ଘରର ସବୁ କାମଦାମ ସାରି ବାବୁ ପାଇଁ ରୋଷେଇ କରି ଦେଇ ରୁବି ଘରକୁ ଗଲା। ଆମେ ସୁନ୍ଦରଗଡ଼ରୁ ଫେରିଲୁ। ରୁବି ଚେତନାକୁ କହିଲା, "ବାବୁକୁ ସେ ଅବସ୍ଥାରେ ଏକା ଛାଡ଼ି ଦେଇ ଯିବାକୁ ମୋ ଗୋଡ଼ ଚଳିଲା ନାହିଁ।" ବାବୁ ମୋତେ କହିଥିଲା, "ବୋଉ, ରୁବିନାନୀ ସେଦିନ ଯେମିତି ଦୈବ ପ୍ରେରିତ ହୋଇ ଆସିଥିଲେ।" ମୋ ମନରେ କେତେ ପ୍ରକାର ଭାବନା ଆସିଲା। ଭାବିଲି ରୁବି କେମିତି ସେହି ନିର୍ଦ୍ଦିଷ୍ଟ ଦିନରେ ହିଁ ଆସି ପହଞ୍ଚିଥିଲା। ବାବୁ ତା'ର ନିଜ ଭାଇ ନୁହେଁ; ସାଙ୍ଗର ଭାଇ। ନିର୍ଜନ ରାତିରେ ତା' ପାଖରେ ରହିଲେ ଘରେ କିଏ କ'ଣ କହିବେ, ଏ ପ୍ରକାର ସଂକୀର୍ଣ୍ଣ ଭାବନା ସେଦିନ ରୁବିକୁ ସ୍ପର୍ଶ କରି ନଥିଲା। ରୁବି ପ୍ରତି କୃତଜ୍ଞତାରେ ମୋ ଅନ୍ତର ପୁରି ଉଠିଲା। ତା'ର ମଙ୍ଗଳ ମନାସିଲି। ସମୟ ଗଡ଼ି ଚାଲିଲା। ବାବୁ ବି.ଜେ.ବି. କଲେଜରେ ପାଠ ପଢ଼ା ଶେଷ କରି ଉଚ୍ଚ ଶିକ୍ଷା ପାଇଁ ଦିଲ୍ଲୀ ଗଲା। ଦିଲ୍ଲୀରେ ପଢ଼ିବା ସମୟରେ ଅଲ୍ ଇଣ୍ଡିଆ ରେଡ଼ିଓରେ ଖବର ପଢ଼ିଲା। ସେଥିରୁ ଯାହା ପଇସା ପାଉଥିଲା ପ୍ରଥମେ ଦିଲ୍ଲୀରୁ ଫେରିଲା ବେଳେ ରୁବି ପାଇଁ ଓ ଚେତନା ପାଇଁ ଦୁଇଟି ସାଲ୍ ଆଣିଥିଲା। ଶୁଣିଥିଲି ରୁବି ନିମାପଡ଼ାରେ ରହୁଛି। କେଉଁ ଏକ ସ୍କୁଲରେ ଶିକ୍ଷୟିତ୍ରୀ ଅଛି। ତା'ର ସର୍ବ ମଙ୍ଗଳ କାମନା କରୁଛି। ସେଦିନର ସ୍ମୃତି ମୋ ମନରେ ଏବେବି ଜୀବନ୍ତ ଅଛି। ବେଳେବେଳେ ମନକୁ ଆସେ ମା' ଦୁର୍ଗାଙ୍କର ମନ୍ଦିର ପରିସରରେ ଆମେ ରହିଛୁ। ମୁଁ ପ୍ରତିଦିନ ସନ୍ଧ୍ୟାବେଳେ ଦୁର୍ଗା ସହସ୍ର ନାମ ପାଠ କରେ। ସେଦିନ ରୁବି କ'ଣ ଥିଲା ମା' ଦୁର୍ଗାଙ୍କର ଭିନ୍ନ ରୂପ ! ସେ ଯାହାହେଉ ମଣିଷପଣିଆ, ମାନବିକତା ଯେ ସେଦିନ ରୁବି ହୃଦୟରେ ଜୀବନ୍ତ ରୂପ ନେଇଥିଲା ଏହା ନିଃସନ୍ଦେହ।



# ସ୍ମୃତି କ୍ଷଣିକର

ରାତି ପାହିଲେ ମଣିଷର ଦିନ ଚର୍ଯ୍ୟାରେ ନାନା ଘଟଣା ଘଟେ ପୁଣି ରାତି ଆସିବା ପର୍ଯ୍ୟନ୍ତ। ପରଦିନକୁ ଘଟଣାଗୁଡ଼ିକ ଅତୀତ ବା ସ୍ମୃତି ପାଲଟି ଯାଏ। ତେଣୁ ମଣିଷ ଜୀବନ ହିଁ ସ୍ମୃତିର ଏକ ଗନ୍ତାଘର। ବିଜ୍ଞଜନ ବା ଜ୍ଞାନୀମାନେ ବିତି ଯାଇଥିବା ଘଟଣା ଉପରେ ଗୁରୁତ୍ୱ ଦେଇ ନଥାନ୍ତି। ମହାପୁରୁଷଙ୍କ ବାଣୀ ଅଛି ଅତୀତ ଯେତେ ପ୍ଲିଜାଣ୍ଟ (ମଧୁମୟ) ହେଉ ପଛେ ବର୍ତ୍ତମାନରେ ସେ ଦୁଃଖର କାରଣ ହିଁ ହୋଇଥାଏ। ମାତ୍ର ସାଧାରଣ ମଣିଷଟିଏ (ଯାହାର ମନ ଉଚ୍ଚତର ଅବସ୍ଥାକୁ ଛୁଇଁ ପାରି ନାହିଁ) ସ୍ମୃତି କବଳରୁ ମୁକ୍ତି ପାଇବା ଏକ କାଠିକର ପାଠ ବ୍ୟାପାର।

ସମୟ ଉଣ୍ଡି ସେମାନେ ମନ ଭିତରେ ଉଙ୍କି ମାରନ୍ତି। ନିରୋଳା ମୁହୂର୍ତ୍ତ ଆସିଲେ ଏଇ ସ୍ମୃତି ସବୁ ଜୀବନ୍ତ ହୋଇ ଉଠନ୍ତି।

କିଛିଦିନ ତଳେ ଜଣେ ବନ୍ଧୁଙ୍କ ସାଙ୍ଗରେ କଥା ହେଉ ହେଉ ଯଖପୁରା ହାଇସ୍କୁଲ କଥା ପଡ଼ିଲା। ଆଖି ଆଗରେ ଭାସି ଉଠିଲେ ଯତିବାବୁ। ପୁରା ନାଁ ଶ୍ରୀଯୁକ୍ତ ଦାଶରଥି ଯତି। ଯଖପୁରା ହାଇସ୍କୁଲର ହେଡ଼ମାଷ୍ଟର ଥିଲେ। ମଧ୍ୟମ ସ୍ୱାସ୍ଥ୍ୟ, ମଧ୍ୟମ ଉଚ୍ଚତାର ସରଳ ବ୍ୟକ୍ତିଟିଏ ସେ। ମୁଁ କହୁଛି ୧୯୮୦ ମସିହାର କଥା। ତାଙ୍କ ସହିତ ପରିଚୟ ହୋଇଥିଲା ଭୁବନେଶ୍ୱର୍ ଲକ୍ଷ୍ମୀସାଗରରେ ଥିବା 'ପୂର୍ବାଞ୍ଚଳ ଭାଷାକେନ୍ଦ୍ର'ରେ। ବଙ୍ଗଳା ଭାଷା ଶିଖିବା ପାଇଁ ସରକାରୀ ବ୍ୟବସ୍ଥାରେ ମୁଁ ସେଠି ଯୋଗ ଦେଇଥିଲି। ଯତିବାବୁ ମଧ୍ୟ ସେଇ ବ୍ୟବସ୍ଥାରେ ସେଠାରେ ବଙ୍ଗଳା ଭାଷା ଶିଖୁଥିଲେ। ଦଶ ମାସିଆ କୋର୍ସ ଭିତରେ ପନ୍ଦର ଦିନ ଷ୍ଟଡ଼ିଟୁର୍‌ରେ କଲିକତା, ଶାନ୍ତିନିକେତନ, ଶ୍ରୀନିକେତନ ଆଦି ଜାଗାକୁ ଯାଇଥିଲୁ। ମୋର ପାରିବାରିକ ଅସୁବିଧା ଥିଲା। ଦୁଇଟି ଛୋଟ ପିଲା ଛାଡ଼ି ମୁଁ ଯାଇଥିଲି। ତେଣୁ ବୁଲାବୁଲି କରିବା, ନୂଆ ଜାଗା ଦେଖିବାରେ ମୁଁ କିଛି ଖୁସି ପାଉ ନଥିଲି। ପିଲାଙ୍କ କଥା ମନେପଡ଼ି ସବୁବେଳେ ଚିନ୍ତିତ ଓ ଅନ୍ୟମନସ୍କ ରହୁଥିଲି। ମୋର ଏ ପ୍ରକାର ମାନସିକ ସ୍ଥିତିରେ ଯତିବାବୁଙ୍କର ସରଳ, ନିଷ୍କପଟ ଓ ଅମାୟିକ ବ୍ୟବହାର ତାଙ୍କୁ ମୋର ନିକଟତର କରିଥିଲା। ମୋ ପ୍ରତି ଅତ୍ୟନ୍ତ ସମ୍ବେଦନଶୀଳ ସେ ଥିଲେ।

ଆଉ ଜଣେ ଶିକ୍ଷକ ବନ୍ଧୁ ଥିଲେ ଚଣ୍ଡିଖୋଲ ହାଇସ୍କୁଲର ହେଡ଼ମାଷ୍ଟର। ତାଙ୍କ ନାଁ ପ୍ରମୋଦ କୁମାର ବ୍ରହ୍ମା। ସୁନ୍ଦର ବଳିଷ୍ଠ ଚେହେରା। ଦେଖିଲେ ମନରେ ଭକ୍ତି ଉଦ୍ରେକ ହୁଏ। ସେଇ ବ୍ରହ୍ମାସାର୍‌ଙ୍କ ନେତୃତ୍ୱରେ ଯତିବାବୁ, ମୁଁ ଓ ମୋର ଆଉ ଜଣେ ସାଙ୍ଗ ସାହସ କରି ସନ୍ଧ୍ୟାବେଳେ "ଏକାଡେମି ଅଫ୍ ଫାଇନ୍ ଆର୍ଟସ"ରେ ନାଟକ ଦେଖିବାକୁ ଯାଇଥିଲୁ। ନାଟକ ଥିଲା "ଗାଲିଲିଓ୍ୱେର ଦାନ୍" । ମଞ୍ଚ ସାଜସଜା, କଳାକାର ଓ ଅଭିନୟ ଥିଲା ଅତ୍ୟନ୍ତ ଆକର୍ଷଣୀୟ, ମନୋହାରୀ। ସବୁ ଲାଗୁଥିଲା ଜୀବନ୍ତ। ଉକ୍ତ କବିଙ୍କ ଭାଷାରେ କହିଲେ – "ଥରେ ଦେଖିଲେ କେବେ ନଯିବ ମନୁ" ।

ଷ୍ଟଡ଼ିଟୁର୍‌ର ଅବଧି ଶେଷ ହେଲା। ଭୁବନେଶ୍ୱର ଫେରିବା ପାଇଁ ଦିନ ଧାର୍ଯ୍ୟ ହେଲା। ଟ୍ରେନ୍‌ରେ ଟିକେଟ କଟା ହେଲା। ରାତି ଟ୍ରେନ୍। ଆମେ ସବୁ ଷ୍ଟେସନ୍‌ରେ ପହଞ୍ଚିଲୁ। ପ୍ଲାଟଫର୍ମରେ ଟ୍ରେନ୍‌କୁ ଅପେକ୍ଷା କରିଛୁ। ସମସ୍ତେ ଆସି ସାରିଥାନ୍ତି। ମାତ୍ର ଯତିବାବୁ ଆସି ନଥାନ୍ତି। କ'ଣ ହେଲା, ଏକାବେଳେ ତ ସମସ୍ତେ ଘର ଛାଡ଼ିଲୁ। କାହିଁକି ଏତେ ବିଳମ୍ବ ହେଉଛି ଜାଣି ନ ପାରି ସମସ୍ତେ ବ୍ୟଗ୍ର ଥାନ୍ତି। ଟ୍ରେନ୍ ଛାଡ଼ିବା ବେଳ ନିକଟ ହେଉଥାଏ। ଯତିବାବୁଙ୍କ ଅନୁପସ୍ଥିତିରେ ଉତ୍କଣ୍ଠାର ବେଗ ମଧ୍ୟ ବଢୁଥାଏ। ବହୁ ବିଳମ୍ବରେ ଯତିବାବୁ ଷ୍ଟେସନ୍‌ରେ ପହଞ୍ଚିଲେ। ଗୋଟାପଣେ ଥରୁଥାନ୍ତି। ପାଟିରେ କଥା ନାହିଁ। ଆମ୍ଭମାନଙ୍କୁ ଦେଖି ସେ ଆହୁରି ଭାବପ୍ରବଣ ହୋଇ ପଡ଼ିଲେ। କଥା କ'ଣ ଜାଣିବାକୁ ସମସ୍ତେ ବ୍ୟାକୁଳ। ବହୁ ସମୟ ପରେ ଯତିବାବୁ ପ୍ରକୃତିସ୍ଥ ହେଲେ। ମୁହଁ ଖୋଲିଲେ– "ପ୍ରଭୁ ଜଗନ୍ନାଥ ରକ୍ଷା କଲେ" । ରିକ୍ସାରେ ଆସୁ ଆସୁ ବାଟରେ ଛୋଟ ପୋଲ କି କଲଭଟ (ମନେପଡୁ ନାହିଁ) ନିକଟରେ ରିକ୍ସାବାଲା ରିକ୍ସା ଅଟକାଇ ପାସ୍ ବସିବାକୁ ତଳକୁ ଗଲା। ଠିକ୍ ଏହି ସମୟରେ ଯତିବାବୁ ଦେଖିଲେ ତାଙ୍କ ଆଗରେ ଦୁଇ ଜଣ ଓ ପଛରେ ଦୁଇଜଣ ଛୁରୀ ଧରି ତାଙ୍କୁ ବନ୍ଦୀ କରିଛନ୍ତି। ଛୁରୀ ତାଙ୍କ ଛାତିରେ ଓ ପିଠିରେ ଲାଗି ରହିଛି। କିଂକର୍ତ୍ତବ୍ୟ ବିମୂଢ଼ ହୋଇ ଯତିବାବୁ ସେଦିନ କ'ଣ ପ୍ରାର୍ଥନା କରିଥିବେ ସେ ଜାଣନ୍ତି। ମୋ ବିଚାରରେ ତାହା ଗଜ, ମୃଗୁଣୀ, ପାଞ୍ଚାଳୀଙ୍କ ଆତୁରତାଠାରୁ ନିଶ୍ଚୟ କମ୍ ହୋଇ ନଥିବ।

କିଛି ସମୟ ଏଇଭଳି ଅବସ୍ଥାରେ ରହିଲା ପରେ ଦୂରରୁ ଶୁଭିଲା ପୋଲିସ୍ ଗାଡ଼ିର ହର୍ଣ୍ଣ। ଆତତାୟୀମାନେ ଅପସରିଗଲେ। ରିକ୍ସାବାଲା ଫେରିଲା। ଯତିବାବୁ ଷ୍ଟେସନରେ ପହଞ୍ଚିଲେ। ପଚାରିଲି, "ଆପଣ କ'ଣ ଜଗନ୍ନାଥଙ୍କୁ ପୂଜା କରନ୍ତି ?"

କହିଲେ, "ମୁଁ ନୁହେଁ ମୋ ସ୍ତ୍ରୀ ପ୍ରତିଦିନ ଜଗନ୍ନାଥଙ୍କୁ ପୂଜା କରେ।" ସେଦିନ ଷ୍ଟେସନରେ ସମସ୍ତ ସହଯାତ୍ରୀଙ୍କ ହାତ ଆପେ ଆପେ ମୁଣ୍ଡ ଉପରେ ଯୋଡ଼ି ହୋଇ ଯାଇଥିଲା। ଆଜି ଯତିବାବୁ କି ବ୍ରହ୍ମାସାର୍ ପାଖରେ ନାହାନ୍ତି। କେଉଁଠି କି ଅବସ୍ଥାରେ ସ୍ୱଦେହରେ କି ବିଦେହରେ ତା' ବି ମୋତେ ଜଣାନାହିଁ। ଦୀର୍ଘ ଚାଳିଶ ବର୍ଷ ପରେ ସେମାନଙ୍କ ଉଦ୍ଦେଶ୍ୟରେ ବିନମ୍ର ଶ୍ରଦ୍ଧାଞ୍ଜଳି ଜଣାଉଛି। ଜୟ ଜଗନ୍ନାଥ।



# ଡୋରି ଏମିତି ଲାଗେ

ପିଲାବେଳୁ ଶୁଣି ଆସିଛି ସମସ୍ତେ କହନ୍ତି ଜଗନ୍ନାଥଙ୍କର ଡୋରି ନଲାଗିଲେ ତାଙ୍କ ଦର୍ଶନ ମିଳେ ନାହିଁ। ମନେ ମନେ ଭାବେ ଡୋରି କ'ଣ ? ସତରେ କ'ଣ ଠାକୁର ଡୋର ଲଗାଇ ଟାଣି ନିଅନ୍ତି ନା ମଣିଷର ଇଛା ଶକ୍ତି ଓ ଆବେଗକୁ ସେ ପୂରଣ କରନ୍ତି। ବୋଧହୁଏ ଦ୍ୱିତୀୟଟି ଠିକ୍। କାରଣ କାହାରି ଦମ୍ଭକୁ ସେ ସହି ପାରି ନାହାନ୍ତି। କେବଳ ଅନ୍ତରର ନିର୍ମଳ ଭାବ ପାଖରେ ସେ ହାର ମାନନ୍ତି। କେତେ ଜଣା ଶୁଣା ବିଜ୍ଞ ବ୍ୟକ୍ତିଙ୍କର ଲେଖା ପଢ଼ିଛି। ଅନ୍ତରରେ ବ୍ୟାକୁଳତା ନଥାଇ କେବଳ ହାଲୁକା ମନରେ ପୁରୀ ଯାଇ ଜଗନ୍ନାଥ ଦର୍ଶନ କରିବା ସମ୍ଭବ ହୋଇ ନାହିଁ। ହୁଏତ ସେମାନଙ୍କର ପୁରୀ ଆସିବା ବନ୍ଦ ହୋଇ ଯାଇଛି କିମ୍ବା ପୁରୀ ଆସିଥିଲେ ମଧ୍ୟ ପ୍ରଭୁଙ୍କର ଦର୍ଶନ ମିଳି ନାହିଁ। ଏ ସମ୍ପର୍କରେ ମୋର ଏକ ଛୋଟ ଅନୁଭବ।

୧୯୯୫ ମସିହାର କଥା। ମୁଁ ସେତେବେଳେ ସୁନ୍ଦରଗଡ଼ ଜିଲ୍ଲାରେ ଥିବା 'ବନ୍ଧବାହାଲ ବାଳିକା ବିଦ୍ୟାଳୟ'ରେ ଶିକ୍ଷୟିତ୍ରୀ ଥିଲି। ବିଦ୍ୟାଳୟଟି ପଶ୍ଚିମ ଓଡ଼ିଶାର ସୀମାନ୍ତ ଅଞ୍ଚଳରେ ଥିବାରୁ ସେଠିକାର ଲୋକେ ପୁରୀ ଆସି ଶ୍ରୀଜଗନ୍ନାଥଙ୍କୁ ଦର୍ଶନ କରିବା ସହଜ ନଥିଲା ସେ ସମୟରେ। ତେଣୁ ବିଦ୍ୟାଳୟର କେତେ ଜଣ ଇଚ୍ଛୁକ ଛାତ୍ରୀଙ୍କୁ ନେଇ ଆମେ ଶିକ୍ଷୟିତ୍ରୀମାନେ ବସ୍‌ଟିଏ ରିଜର୍ଭ କରି (ପୂଜା ଛୁଟି କି ବଡ଼ଦିନ ଛୁଟି ମନେ ପଡୁନାହିଁ) ପୁରୀ କୋଣାର୍କ ବୁଲିବା ଉଦ୍ଦେଶ୍ୟରେ ଆସିଲୁ। ଭୁବନେଶ୍ୱରରେ ବ୍ରହ୍ମେଶ୍ୱର ହାଇସ୍କୁଲର କର୍ତ୍ତୃପକ୍ଷଙ୍କ ଅନୁମତି ନେଇ ସ୍କୁଲରେ ରହିବା ବ୍ୟବସ୍ଥା ହୋଇଥାଏ। ପ୍ରଥମ ଦିନ ଭୁବନେଶ୍ୱର ଓ ନନ୍ଦନକାନନ ଇତ୍ୟାଦି ଦେଖା ସରିଗଲା। ତା'ପରଦିନ ଧଉଳି, କୋଣାର୍କ ଦେଖା ହେଲା। କଥା ଥାଏ ଶେଷଦିନ ପୁରୀ ଯାଇ ସମୁଦ୍ରକୂଳ ବୁଲି ଜଗନ୍ନାଥ ଦର୍ଶନ କରି ସିଧା ସୁନ୍ଦରଗଡ଼ ଫେରିଯିବା। ଯେଉଁଦିନ ଆମର ପୁରୀ ଯିବା କଥା, ସେହିଦିନ ବଡ଼ଦାଣ୍ଡରେ ଅଘଟଣ ଘଟିଲା। କ'ଣ ଏକ ଅଶୁଭ ଘଟଣା ଘଟି ମନ୍ଦିର ଦର୍ଶନ ଓ ପୁରୀକୁ ଗାଡ଼ି ମଟର ଯିବା ଆସିବା ବନ୍ଦ ହୋଇଗଲା। କାଳେ ପରିସ୍ଥିତି ସୁଧୁରିବ ଓ ଆମର ଇଚ୍ଛା ପୂରଣ ହେବ ଭାବି

ଦୁଇଦିନ ଅପେକ୍ଷା କଲୁ, ମାତ୍ର କୌଣସି ପରିବର୍ତ୍ତନ ଘଟିଲା ନାହିଁ। ବୋଧହୁଏ ୧୪୪ ଧାରା ଜାରି ହୋଇଥିଲା ସେତେବେଳେ। ଆମେ ଦିଅଁ ଦର୍ଶନରୁ ବଞ୍ଚିତ ହୋଇ ସୁନ୍ଦରଗଡ଼ ଫେରିଲୁ। ମନେମନେ ବହୁତ ଭାବିଥିଲି। ଠାକୁରଙ୍କର ଇଚ୍ଛା ନଥିଲା କି ଆମେ ଯେଉଁ ମଉଜ ମଜଲିସ୍‌ର ମାନସିକତା ନେଇ ଯାଇଥିଲୁ ସେଥିପାଇଁ ତାହା ସମ୍ଭବ ହେଲା ନାହିଁ, ତାହା ସେହି ଅନ୍ତର୍ଯ୍ୟାମୀଙ୍କୁ ହିଁ ଜଣା। ଆମେ ସେତେବେଳେ ଶ୍ରୀ ଜଗନ୍ନାଥଙ୍କ ଦର୍ଶନକୁ ପ୍ରାଥମିକତା ଦେଇ ନଥିଲୁ।

୧୯୯୮ ମସିହାରେ ମୋ ଜୀବନରେ ଦୁର୍ଦ୍ଦିନ ଆସିଲା। ମୋର ପିଲା ଦି'ଜଣ ବାପାଙ୍କୁ ହରାଇଲେ। ମୁଁ ବଦଳି ହୋଇ 'ପ୍ରତାପ ଶାସନ ହାଇସ୍କୁଲ' ବାଳକାଟିକୁ ଆସିଲି। ବର୍ଷ ପରେ ବର୍ଷ ବିତିଗଲା। ପୁରୀ ଯାଇ ପାରିଲି ନାହିଁ କି ଠାକୁରଙ୍କୁ ଦେଖି ପାରିଲି ନାହିଁ। ମନ ଉଚ୍ଛନ୍ନ ହେଲା। ସହକର୍ମୀ କେତେଜଣଙ୍କୁ ସାଙ୍ଗ କଲି ସ୍କୁଲରୁ Half day C.L. ନେଇ ପୁରୀ ଯାଇ ଫେରି ଆସିବାକୁ। ମାତ୍ର ସମସ୍ତଙ୍କ ଘରେ ଛୋଟ ପିଲା। ମୋ ପ୍ରସ୍ତାବରେ ରାଜି ହେବା ସେମାନଙ୍କ ପାଇଁ ସମ୍ଭବ ନଥିଲା। ଏକୁଟିଆ ପୁରୀ ଯାଇ ମନ୍ଦିର ଦର୍ଶନ କରିବାକୁ ମୋର ସାହସ ହେଉ ନଥାଏ। ମନକଥା ମନରେ ଥାଏ। ଦିନେ ସକାଳେ ୮ଟା କି ୮.୩୦ ମିନିଟ୍ ସମୟ ହେବ, ମୁଁ ବସି ପରିବା କାଟୁଛି। ଆମ ଘର ପାଖ ରାଧିକା ଆପାର୍ଟମେଣ୍ଟ ରୁ ଲୁସି (ମୋର ଝିଅାରୀ ହିସାବ ହେବ) ଟେଲିଫୋନ୍ କଲା, "ମାଉସୀ, ମୁଁ ମୋ ଶାଶୂଙ୍କୁ ନେଇ ପୁରୀ ଯାଉଛି। ଆମ ଗାଡ଼ିରେ ଗୋଟିଏ ସିଟ୍ ଖାଲି ଅଛି। ଆପଣ ଯିବେ କି ?" ମୁଁ ହଠାତ୍ କି ଜବାବ ଦେବି ଜାଣି ପାରିଲି ନାହିଁ। ତା'ପରେ କହିଲି, "ମୁଁ ତ ପ୍ରସ୍ତୁତ ହୋଇନାହିଁ, କ'ଣ କରିବା।" ଆପଣ ସୁବିଧାରେ ବାହାରନ୍ତୁ, ମୁଁ ଅପେକ୍ଷା କରିଛି ଲୁସି କହିଲା। ତାଙ୍କ ସାଙ୍ଗରେ ପୁରୀ ଗଲି। ପ୍ରଭୁଙ୍କୁ ଦର୍ଶନ କଲି। ଅନୁଭବ କଲି ଏଇ ବୋଧହୁଏ ଠାକୁରଙ୍କର ଡୋରି। ଆଉ ଥରେ ମଧ୍ୟ ଅସମ୍ଭବ ସମ୍ଭବ ହୋଇଥିଲା ମୋ ପାଇଁ। ତାଙ୍କର କୃପାରୁ କେମିତି ମନ୍ଦିର ଯାଇ ତାଙ୍କର ପୂର୍ଣ୍ଣ ଦର୍ଶନ ପାଇଥିଲି ସେକଥା ମୁଁ ମୋର "ପେଡ଼ି ଆଳିମାଳିକା" ବହିରେ କହିଛି।

ଏଥର ଆଉ ଏକ ଘଟଣା –

ଜଗଦ୍‌ଗୁରୁ ଠାକୁର ଅଭିରାମ ପରମହଂସ କହିଛନ୍ତି "ଗୁରୁ ରୂପେ ଜ୍ଞାନ ନଦେଲେ ଆପଣ କେହ୍ନେ ଜାଣିବି ତୁମକୁ"। ପରମ ଶାସ୍ତ୍ର ଭାଗବତ ମଧ୍ୟ ତାହାହିଁ କହେ। "ମୁହିଁ ବସଇ ଗୁରୁ ଦେହେ, ମୋ ଠାରୁ ଗୁରୁ ଭିନ୍ନ ନୁହେଁ"। ତେଣୁ ଗୁରୁ କୃପା ଓ ପ୍ରଭୁ କୃପା

ଯେ ଅଭିନ୍ନ ଏହା ମୋର ଦୃଢ଼ ବିଶ୍ୱାସ। ପୂର୍ବ ସୁକୃତରୁ ଏ ଜନ୍ମରେ ମୋତେ ଗୁରୁ ପ୍ରାପ୍ତ ହୋଇଛନ୍ତି। ଗୁରୁ ଅହେତୁକ କୃପାନିଧି। ତାଙ୍କ କୃପାର ଝଲକ ଜୀବନରେ ଅନେକବାର ଅନୁଭବ କରିଛି। ସେଥିରୁ ଗୋଟିଏ ଲେଖୁଛି। ସାଧାରଣ ଦୃଷ୍ଟିରେ ଘଟଣାଟି ସାଧାରଣ ମାତ୍ର ମୋ ପାଇଁ ତାହା ଅସାଧାରଣ। ଗୁରୁଦେବଙ୍କର ନିବାସସ୍ଥଳ ହେଉଛି "ଆର୍ଯ୍ୟ ଋଷିକୁଳ ବଶିଷ୍ଠ ଯୋଗାଶ୍ରମ", ଯାହା ଟଙ୍କପାଣି ରୋଡ଼ର ମୁଖ୍ୟ ରାସ୍ତା କଡ଼ରେ ଅବସ୍ଥିତ। ଠିକ୍ ତା'ର ସମ୍ମୁଖରେ ଟଙ୍କପାଣି ରୋଡ଼ର ବିପରୀତ ଦିଗରେ ଆଶ୍ରମର ଦୁର୍ଗାମନ୍ଦିର ଅବସ୍ଥିତ। ସେଇ ଦୁର୍ଗାମନ୍ଦିର କ୍ୟାମ୍ପସ୍ ଭିତରେ ଆଜବେଷ୍ଟସ୍ ଛାତ ଥିବା ୩/୪ଟି ଗୋଟିକିଆ ଘର ଅଛି। ମୋର ପିଲାମାନେ ସେଇ ଆଜବେଷ୍ଟସ୍ ଘରେ ବାପାଙ୍କ ସାଙ୍ଗରେ ରହି ଭୁବନେଶ୍ୱରରେ ଥିବା D.M. ସ୍କୁଲରେ ପଢୁଥିଲେ। ମୁଁ ସୁନ୍ଦରଗଡ଼ରେ ଚାକିରି କରୁଥିଲି। ଛୁଟିରେ ଆସିଲେ ମୁଁ ବି ସେଇ ଆଜବେଷ୍ଟସ୍ ଘରେ ରହୁଥିଲି। ସେଦିନ ମୋର ସୁନ୍ଦରଗଡ଼ ଫେରି ଯିବାକୁ ଥାଏ। ସେତେବେଳେ ସୁନ୍ଦରଗଡ଼ ଯିବା ପାଇଁ ସକାଳୁ ଆଡ଼ଭାନ୍ସ ଟିକେଟ କରା ହେଉଥିଲା। ବସ୍ ଛାଡୁଥିଲା ଅପରାହ୍ଣ ୫ଟା ବେଳେ। ତେଣୁ ମୁଁ ଟଙ୍କପାଣି ରୋଡ଼ରୁ ୩ଟା ବେଳୁ ବାହାରିଲେ ରିକ୍ସାରେ ଯାଇ ବରମୁଣ୍ଡା ବସ୍‌ଷ୍ଟାଣ୍ଡରେ ୫ଟା ପୂର୍ବରୁ ପହଞ୍ଚି ପାରୁଥିଲି। ସେଦିନ ମୋର ୩ଟା ବେଳକୁ ବାହାରିବା କଥା। ଆରପଟେ ଆଶ୍ରମ ନିୟମ ଅନୁସାରେ ୪ଟା ପୂର୍ବରୁ ଗେଟ୍ ଖୋଲା ହୁଏ ନାହିଁ। ସେତେବେଳେ ଟେଲିଫୋନ୍‌ର ସୁବିଧା ବି ନଥାଏ। ତେଣୁ ମୋ ମନ ଖାଲି ଘାଣ୍ଟି ହେଉଥାଏ। ଗଲାବେଳେ ବାବା (ଗୁରୁଦେବ)ଙ୍କୁ ଦେଖା ନକରି କେମିତି ଯିବି ? ଯିବା ବେଳ ଆସିଲା। ବାବାଙ୍କୁ ଦେଖା କରିବା ସମ୍ଭବ ନଥିଲା। ମନକଥା ମନରେ ମାରି ଦୁର୍ଗା ମନ୍ଦିର ଗେଟ୍ ପାଖରେ ଆଶ୍ରମ ଉଦ୍ଦେଶ୍ୟରେ ପ୍ରଣାମ ଜଣାଇ ରିକ୍ସାରେ ବସିବାକୁ ଉଦ୍ୟତ ହେଉଛି ସେପଟରୁ ଆଶ୍ରମ ଗେଟ୍ ଖୋଲାହେଲା। ଦେଖିଲି ବାବା ଛିଡ଼ା ହୋଇଛନ୍ତି। କହିଲେ, "କ'ଣ ବାହାରିଲ" ? ସ୍ତବ୍ଧ ହୋଇଗଲି କ୍ଷଣକାଳ। ଆନନ୍ଦରେ ଦୌଡ଼ିଗଲି ଆରପଟକୁ। ପାଦରେ ପ୍ରଣାମ ଜଣାଇ ରିକ୍ସାରେ ବସିଲି। ଅବେଳରେ ଆଶ୍ରମ ଗେଟ୍ କେମିତି ଖୋଲିଲା ଭାବି ଭାବି ବରମୁଣ୍ଡାରେ ପହଞ୍ଚିଲି।

ମହାପ୍ରଭୁଙ୍କ ପରି ଗୁରୁଦେବଙ୍କର ମଧ ଡୋରି ଲାଗେ।

ଥରେ ବାବା ତାଙ୍କର ଜଣେ ଦୀକ୍ଷିତ ଶିଷ୍ୟଙ୍କୁ କହୁଥିବାର ଶୁଣିଥିଲି, "ମୁଁ ଚାହିଁଲେ ହିଁ ତମେମାନେ ଏଠିକି ଆସିବ।" କ୍ରିୟାଯୋଗୀ ପରମହଂସ ପ୍ରଜ୍ଞାନାନନ୍ଦଜୀ ମଧ ଜଣେ ଶିଷ୍ୟଙ୍କର ପ୍ରଶ୍ନରେ ଅନୁରୂପ ଉତ୍ତର ଦେଇଥିଲେ ବୋଲି ମୋ ଝିଅ

ମୋତେ କହିଥିଲା। ମୋ ଝିଅ ପରମହଂସ ପ୍ରଜ୍ଞାନାନନ୍ଦଜୀ ମହାରାଜଙ୍କ ଦ୍ୱାରା ଦୀକ୍ଷାପ୍ରାପ୍ତ। ମହାମାରୀ କରୋନା ଲକ୍ ଡାଉନ୍ ସମୟରେ ଆଶ୍ରମ ସହିତ ଯୋଗାଯୋଗ ପ୍ରାୟ ବିଚ୍ଛିନ୍ନ ଥାଏ। ଆଗରୁ ମୁଁ ଦିନେ ଦୁଇଦିନ ଅନ୍ତରରେ ଯାଇ ବାବାଙ୍କୁ ଦର୍ଶନ କରି ଆସୁଥିଲି। କରୋନା କଟକଣା ହେତୁ ବାବା ଏକାନ୍ତବାସରେ ରହିଥାନ୍ତି। ବୟସ ଆସି ୯୪/୯୫ ହେଲାଣି। କେତେବେଳେ କୋଉ କଥା। ତେଣୁ ଆମେ କେହି ବାବାଙ୍କ ପାଖକୁ ଯାଉ ନଥିଲୁ। ଥରେ କାହିଁକି କେଜାଣି ମନ ବ୍ୟସ୍ତ ଲାଗିଲା। ମୁଁ ଓ ଚେତନା (ମୋ ଝିଅ) ଦୁଇଜଣଯାକ ସାଙ୍ଗ ହୋଇ ବାବାଙ୍କ ପାଖକୁ ଗଲୁ। ବାବାଙ୍କୁ ଦର୍ଶନ କଲୁ। କଥାବାର୍ତ୍ତା ଭିତରେ ଜାଣିଲି ସେଦିନ ଆଶ୍ରମ ପରିଚାଳକଙ୍କ ଛୋଟ ପୁଅଟି ଆମ ଘରକୁ ଆସିବାକୁ ଜିଦି ଧରିଥିଲା। ବାବା ତାକୁ ବୁଝାଇ କହିଥିଲେ "ସେମାନେ ଆଜି ଆମ ପାଖକୁ ଆସିବେ, କାହିଁକି ବ୍ୟସ୍ତ ହେଉଛୁ ?" ସେକଥା ସେଇଠି ସରିଥିଲା। ଏତେ ଗୁରୁତ୍ୱ ଦେଇ ନଥିଲି। କିଛିଦିନ ବିତିଗଲା। ଆଶ୍ରମ ପରିଚାଳକ (ଅଶୋକ ଦାଦା) ଦିନେ ଆମ ଘରକୁ ଆସିଥିଲେ। ବାବା ଆମକୁ ଖୋଜୁଛନ୍ତି ବୋଲି କହିଥିଲେ। କଟକଣା ହଟି ନଥାଏ। ତେଣୁ ଆମେ ଆଉ ଗଲୁ ନାହିଁ। ଦିନେ ଏମିତି ଘଟିଲା ଯେ ସାଙ୍ଗେ ସାଙ୍ଗେ ବାବାଙ୍କ ପାଖକୁ ଯିବାକୁ ହେଲା। ଘଟଣାଟି ଏମିତି:- ଆମ ଘରପାଖ ହନୁମାନ ମନ୍ଦିରର ପୂଜାରୀ ଆମ ଗେଟ୍ ପାଖକୁ ଆସି ଛୋଟ ନାତିଟିକୁ ପଚାରିଲେ, "ବିଷ୍ଣୁ ମନ୍ଦିର ବାବାଙ୍କ ଦେହ କ'ଣ ଖରାପ ଅଛି ?" ପିଲା ଆସି ଘରେ କହିଲା। ସେଦିନ ରବିବାର ଥାଏ। ଚେତନାର ଅନ୍ ଲାଇନ୍ କ୍ଲାସ ନଥାଏ। ଟେଲିଫୋନ୍ କଲେ ବି ଆଶ୍ରମରୁ କିଛି ଉତ୍ତର ମିଳୁ ନାହିଁ। ମନ ପାପ ଛୁଇଁଲା। ଚେତନା ସାଙ୍ଗେ ସାଙ୍ଗେ ଆଶ୍ରମକୁ ଗଲା। ଏପଟରୁ ଦୁର୍ଗାମନ୍ଦିର ଗେଟ୍ ଖୋଲୁ ଖୋଲୁ ଦେଖିଲା ଆରପଟୁ ଅଶୋକ ଦାଦା ଆଶ୍ରମର ମୁଖ୍ୟ ଗେଟ୍ ଖୋଲୁଛନ୍ତି। କରୋନା କଟକଣା ପାଇଁ ଆଶ୍ରମର ଗେଟ୍ ପ୍ରାୟ ବନ୍ଦ ରହୁଥିଲା। ମାତ୍ର ସେଦିନ କାକତାଳୀୟ ନିୟମରେ ଏପଟ ଗେଟ୍ ଖୋଲୁ ଖୋଲୁ ସେପଟ ଗେଟ୍ ଖୋଲା ହୋଇଥିଲା। ଆଶ୍ରମ ଭିତରେ ସବୁ ଠିକ୍‌ଠାକ୍ ଥିଲା। ବାବା ଭଲ ଥିଲେ। ବହୁତ ସମୟ ତାଙ୍କ ସାଙ୍ଗରେ କଥା ହୋଇ ସାରି ଡେରିରେ ଘରକୁ ଫେରିଲା ଚେତନା। ବାବା ଭଲ ଅଛନ୍ତି ବୋଲି ହନୁମାନ ମନ୍ଦିର ପୂଜାରୀଙ୍କୁ କହିବାକୁ ଗଲା। ସେଠାରେ ସେ ଯାହା ଶୁଣିଲା କଥା ଅନ୍ୟ ପ୍ରକାର ଥିଲା। ପୂଜାରୀ ମହାଶୟ ଓ କୋଟ୍ କଲୋନୀର କେତେ ଜଣ ଲୋକ ଖୁବ୍ ଚିନ୍ତିତ ଥିଲେ। ସେମାନେ ଶୁଣିଥିଲେ ଯେ ବାବା ଆଉ ସ୍ୱଦେହରେ ନାହାନ୍ତି। ପୂଜାରୀ ଆଙ୍କ କଥାଟା ସିଧା କହି ନପାରି ଦେହ ଖରାପ ଅଛି ବୋଲି ପଚାରିଥିଲେ।

ଘଟଣାଟିକୁ ଅନ୍ୟମାନେ କେମିତି ଗ୍ରହଣ କରିବେ କହିପାରିବି ନାହିଁ। କିନ୍ତୁ ମୋତେ ଲାଗିଲା ଏ ଥିଲା ଗୁରୁଦେବଙ୍କର ଏକ ଲୀଳା। ତାଙ୍କ ପାଖକୁ ଯିବା ପାଇଁ ତାଙ୍କର ଡୋରି।

"ଜୟ ଗୁରୁଦେବ ଜୟ ହେ ଜୟ ହୃଦବିହାରୀ
ମୋ ନେତ୍ର ସଦା ଦେଖୁଥାଉ ତବ ଲୀଳା ମାଧୁରୀ।"



# ଦିବ୍ୟ ଆନନ୍ଦ

ସେ ଦିନ ଥିଲା ୨୦୨୧ ମସିହା ଫେବୃୟାରୀ ମାସ ୨୧ ତାରିଖ। ପୁଣ୍ୟମୟୀ 'ଶ୍ରୀମା'ଙ୍କର ଶୁଭ ଜନ୍ମଦିନ। ସେହି ଦିନଟିକୁ ଅନୁଗତ ସନ୍ତାନଗଣ 'ମାତୃ ଦିବସ' ରୂପେ ପାଳନ କରିଥାନ୍ତି। ସଂଯୋଗ କ୍ରମେ ସେଦିନଟି ମଧ୍ୟ ଥିଲା ଆନ୍ତର୍ଜାତିକ 'ମାତୃଭାଷା' ଦିବସ। ତେଣୁ ମୋ କଥା ଆରମ୍ଭ କରିବା ପୂର୍ବରୁ ମାତୃଭାଷା ଜନନୀ ଓ ଦିବ୍ୟ ଜନନୀଙ୍କ ପାଦପଦ୍ମରେ କୋଟି ପ୍ରଣାମ ନିବେଦନ କରୁଛି। ମନେପଡୁଛି ଠାକୁର ଅଭିରାମ ପରମହଂସ ଦେବଙ୍କ ରଚନା- "ଦୀନବନ୍ଧୁ ହେ ବନ୍ଧୁ ତୁମେ ମୋହର, ଯିଏ ଯେଉଁପରି ଭାବୁଛି ତୁମକୁ ସେହି ଅନୁସାରେ ତୁମେ ତାହାର।"

ଏଥିରୁ ମୁଁ ଏହାହିଁ ବୁଝିଛି ଯେ ଦିବ୍ୟକୃପା କେବଳ ଅନୁଭବ ସାପେକ୍ଷ। କେତେବେଳେ କେଉଁ ରୂପରେ କାହା ଉପରେ ତା'ର ନିର୍ଝର ଝରି ପଡ଼ିବ କେବଳ ଅନୁଭବୀ ହିଁ ଜାଣିପାରିବ ତା'ର ଅନୁଭବରେ। ଏବେ ମୋ ନିଜ କଥା କହୁଛି। ସେଇ ଫେବୃୟାରୀ ୨୧ ତାରିଖ ରବିବାର ଦିନ ଶ୍ରୀଯୁକ୍ତ ହରମୋହନ ମିଶ୍ରଙ୍କର ଏକ ପୁସ୍ତକ 'ଅଜ୍ଞାତ ସତ୍ୟ' ଲୋକାର୍ପିତ ହେବାକୁ ସ୍ଥିର ହୋଇଥାଏ। ଲେଖକ ମହାଶୟ ଶ୍ରୀମା, ଶ୍ରୀ ଅରବିନ୍ଦଙ୍କ ପାଦରେ ସମର୍ପିତ। ତେଣୁ ମା'ଙ୍କ ଜନ୍ମଦିନରେ ପୁସ୍ତକଟିକୁ ଉନ୍ମୋଚନ କରିବାକୁ ସ୍ଥିର କରିଥାନ୍ତି। ସେହି ଉତ୍ସବରେ ଯୋଗ ଦେବା ପାଇଁ ନିମନ୍ତ୍ରଣ ପତ୍ର ଖଣ୍ଡେ ମୋତେ ସେ ଆଗରୁ ଦେଇଥିଲେ। ତାଙ୍କ ସହିତ ମୋର ସମ୍ପର୍କ ଏକ ଆଧ୍ୟାତ୍ମିକ ପରିବେଶରୁ ଆରମ୍ଭ। ମୁଁ ରହୁଥିବା ଘରକୁ ଲାଗି କରି ରହିଛି ଜଗଜ୍ଜନନୀ ମା' ଦୁର୍ଗାଙ୍କର ଏକ ମନ୍ଦିର। ପ୍ରତିବର୍ଷ ଶାରଦୀୟ ଦୁର୍ଗାପୂଜାରେ 'ଆର୍ଯ୍ୟ ଋଷିକୁଳ ବଶିଷ୍ଠ ଯୋଗାଶ୍ରମ' ତରଫରୁ ସେଠାରେ ଦୁର୍ଗାପୂଜା ଅନୁଷ୍ଠିତ ହୋଇଥାଏ। ସେହି ଦୁର୍ଗା ମଣ୍ଡପରେ ପ୍ରତିଦିନ ସକାଳେ ଶ୍ରୀଯୁକ୍ତ ହରମୋହନ ମିଶ୍ର, ଶ୍ରୀଯୁକ୍ତ ବିକ୍ରମ ପ୍ରଧାନ ଓ ଶ୍ରୀଯୁକ୍ତ ରବୀନ୍ଦ୍ରନାଥ ସାହୁ ଏକାଠି ହୁଅନ୍ତି। କିଛି ସମୟ ଯୋଗାଭ୍ୟାସ କରିସାରି କିଛି ଆଧ୍ୟାତ୍ମିକ ବିଷୟରେ ଆଲୋଚନା ଓ ଭଜନ ଇତ୍ୟାଦି ଗାଇ ସେମାନେ ଘରକୁ ଫେରନ୍ତି। ନିୟମିତ ନ ହେଲେ ମଧ୍ୟ ଅଧିକାଂଶ ସମୟରେ ମୁଁ ସେମାନଙ୍କ ସହିତ

ଯୋଗ ଦେଇଥାଏ। ଆଲୋଚନା ଶେଷରେ ବିକ୍ରମ ବାବୁ ମା'ଙ୍କର 'Radha's Prayer' ଟିକୁ ଏମିତି ସମର୍ପିତ ଭାବ ଓ ସୁଲଳିତ ସ୍ୱରରେ ଗାଆନ୍ତି ଯେ ଶୁଣିଲେ ଅନ୍ତର ଅପୂର୍ବ ଆନନ୍ଦରେ ପୂରିଉଠେ। ମୋ ମନରେ ଭାବନା ଆସେ ସତରେ କ'ଣ ଏ ଜନ୍ମରେ ଏମିତି ସମର୍ପିତ ଭାବ ମୋ ହୃଦୟରେ ସୃଷ୍ଟି ହୋଇପାରିବ ? ସତକଥା ହେଲା ସେମାନଙ୍କ ସହିତ ମିଶୁଥିଲେ ମଧ୍ୟ ମୋ ଅନ୍ତରରେ ଶ୍ରୀମାଙ୍କ ପ୍ରତି ଐକାନ୍ତିକ ଭକ୍ତି ଓ ସମର୍ପଣ ଭାବ ତାଙ୍କ ଭଳି ଆସେ ନାହିଁ। ତାହା ମୁଁ ଅନୁଭବ କରେ ଏବଂ କାହିଁକି ଏପରି ଘଟୁଛି ତା'ର କାରଣ ମନେ ମନେ ଯେତେ ଖୋଜିଲେ ବି ପାଏନାହିଁ। ପୁସ୍ତକ ଉନ୍ମୋଚନ ଉତ୍ସବକୁ ମୁଁ ଯାଇପାରିବି ନାହିଁ ବୋଲି ମିଶ୍ରବାବୁ ଆଗରୁ ଭଲକରି ଜାଣିଥାନ୍ତି। କାରଣ ମୋର ଶାରୀରିକ ଅସୁସ୍ଥତା ବିଷୟରେ ସେ ଅବଗତ। ନିମନ୍ତ୍ରଣ ପତ୍ର ଦେଲାବେଳେ ମଧ୍ୟ ମୁଁ ତାଙ୍କୁ କହିଥିଲି "କାହିଁକି କାର୍ଡ ଦେଉଛନ୍ତି, ଆପଣ ତ ସବୁ ଜାଣିଛନ୍ତି"। ସେ କହିଲେ କାର୍ଡଟି ଥାଉ, ପାଖ ବାଟ ତ ଚେଷ୍ଟା କରିବେ। ମୁଁ କିନ୍ତୁ ଯାଇପାରିବି ନାହିଁ ବୋଲି ଭାବି ଘଟଣାଟିକୁ ସମ୍ପୂର୍ଣ୍ଣ ଭୁଲି ଯାଇଥିଲି। ଠିକ୍ ୨୦ ତାରିଖ ଦିନ ମିଶ୍ରବାବୁ ଟେଲିଫୋନ୍ କରି କହିଲେ "ବିନ୍ଦୁ ସାଗର ଛକ ଉପରେ 'କେଦାରନାଥ ଗବେଷଣା ପ୍ରତିଷ୍ଠାନ' (ଯେଉଁଠି ପୁସ୍ତକ ଉନ୍ମୋଚିତ ହେବ) ଅବସ୍ଥିତ। ସେଠାରେ ବାଥ୍‌ରୁମ୍‌ର ସୁବିଧା ଅଛି। ତା'ଛଡ଼ା ମୋ ମିସେସ୍ ଓ ଆମେ ସମସ୍ତେ ସେଠି ଥିବୁ, ଆପଣଙ୍କର କିଛି ଅସୁବିଧା ହେବନାହିଁ। ମୋ ମିସେସ୍ କହୁଛନ୍ତି ଆପଣ ନିଶ୍ଚୟ ଆସିବେ"। ମନରେ ଆଗ୍ରହ ସୃଷ୍ଟିହେଲା, ଦେହରେ ବଳ ଆସିଲା। ପ୍ରତିଶ୍ରୁତି ଦେଲି ଯିବାପାଇଁ। ମନେ ମନେ ଘାରିହେଲି ଆଗରୁ ତ ଯିବାପାଇଁ ଇଚ୍ଛା ହେଉନଥିଲା, ଏବେ କାହିଁକି ଏତେ ଆଗ୍ରହ ଆସୁଛି। ଏ କ'ଣ ମା'ଙ୍କର ପ୍ରେରଣା ? ଉତ୍ସବରେ ଯୋଗ ଦେଲି। ମା', ଶ୍ରୀଅରବିନ୍ଦଙ୍କ ବିଜେ ଆସ୍ଥାନରେ ଅନ୍ତରର ଭକ୍ତି ପୁଷ୍ପାଞ୍ଜଳି ଅର୍ପଣ କଲି। ଗୁଣୀଜନଙ୍କର ଭାଷଣ ଶୁଣି ବହୁତ ଭଲ ଲାଗିଲା। ସଭାକାର୍ଯ୍ୟ ଶେଷ ହେଲା। ତା'ପରେ ପ୍ରସାଦ ସେବନର ଆୟୋଜନ ହେଲା। ସେତିକିବେଳେ ଏମିତି ଏକ ଘଟଣା ଘଟିଲା ଯାହା ସାଧାରଣ ମନେ ହେଲେ ମଧ୍ୟ ମୋ ପାଇଁ ଅଭାବିତ ଥିଲା। ଘଟଣାଟି ଏମିତି-

ମୋର ଅଣ୍ଟାରେ ଅସୁବିଧା ହେତୁ ମୁଁ ତଳେ ବସି ଖାଇ ପାରେନାହିଁ। ତେଣୁ ଅତିଥିମାନଙ୍କ ପାଖରେ ମୁଁ ଗୋଟିଏ ଚେୟାରରେ ବସିଥିଲି। ମୋ କଡ଼ରେ ଟିକେ ଦୂରରେ ଆଉ ଗୋଟିଏ ଚେୟାର ଥିଲା, ଯାହା ଉପରେ ମୁଁ ମୋ ବ୍ୟାଗଟି ରଖିଥିଲି। ଟେବୁଲ୍ ଉପରେ ଆଉ ଜାଗା ନଥିଲା। ଦେଖିଲି ମୋ ପାଖରେ ଟେବୁଲକୁ ଲାଗି

ଜଣେ ଭଦ୍ରବ୍ୟକ୍ତି ଛିଡ଼ା ହୋଇଛନ୍ତି। ମୁଁ ମୋ ପତ୍ରକୁ ଘୁଞ୍ଚାଇ ଆଣି ତାଙ୍କୁ କହିଲି "ଆପଣ ସେ ଚେୟାରଟିକୁ ବୁଲାଇ ଦେଇ ବସିଯାନ୍ତୁ। ଜାଗା ହୋଇଯିବ। ବ୍ୟାଗଟିକୁ କାଢ଼ି ଆଣିଲାରୁ କହିଲେ "ମା' ସେ ବ୍ୟାଗ ଥାଉ, ମୁଁ ବ୍ୟାଗ୍ କଡ଼ରେ ବସିଯାଉଛି"। ପ୍ରସାଦ ବଢ଼ା ହେଲା। ଯେହେତୁ ସେ ଡେରିରେ ଆସିଥିଲେ ତାଙ୍କ ପତ୍ରରେ ଲୁଣ, ଲେମ୍ବୁ, କଞ୍ଚାଲଙ୍କା ନଥିଲା। ସେ ମୋ ପତ୍ରରୁ ଲୁଣ କଞ୍ଚାଲଙ୍କା ଦଳାରୁ ଅଧେ ନେଲେ ଏବଂ କହିଲେ "ମା' ପାଖରେ ବସିଛି, ମା' ପତ୍ରରୁ କିଛି ନ ନେଲେ ପେଟ ପୂରିବନାହିଁ"। ମୁଁ ଅବାକ୍ ହେଲି। ତାଙ୍କୁ ପଚାରିଲି "ଆପଣ କ'ଣ ବେଙ୍ଗଲି ?" ତାଙ୍କର ବେଶଭୂଷା ଓ ଆଚରଣରୁ ମୁଁ ତାଙ୍କୁ ବେଙ୍ଗଲି ବୋଲି ଭାବିଥିଲି। ସେ କହିଲେ "ନା, ମୁଁ ବେଙ୍ଗଲି ନୁହେଁ, କିନ୍ତୁ ବଙ୍ଗଳା ସାହିତ୍ୟକୁ ଭଲପାଏ। କଥାବାର୍ତ୍ତାରୁ ଜାଣିଲି ସେ ଗୋପବନ୍ଧୁଙ୍କ ଗଦ୍ୟ ସାହିତ୍ୟ ଉପରେ ଗବେଷଣା କରି ଡିଗ୍ରୀ ପ୍ରାପ୍ତ ହୋଇଛନ୍ତି। ଖାଇସାରି ବାହାରକୁ ଆସି କିଛି ସମୟ କଥାହେଲୁ। ସେ ମୋତେ ତାଙ୍କ ସମ୍ପାଦିତ ତ୍ରୈମାସିକ ପତ୍ରିକା "ସୁଧାଧାରା" ଖଣ୍ଡେ ଦେଲେ ଏବଂ କହିଲେ, "ମା' ଠାରୁ ନେଲି ଆଉ ମା'କୁ କିଛି ଦେବିନାହିଁ ? ମୋର ଟେଲିଫୋନ୍ ନମ୍ବର ପଚାରିଲେ ଏବଂ ତାଙ୍କ ପକେଟ୍ ଟିପା ଖାତାରେ ଲେଖିନେଲେ "ମାତୃ ଦିବସରେ ମାଆ ମିଳିଲେ"।

ଆଶ୍ଚର୍ଯ୍ୟ ହେଲି କିଏ ସେ ଲୋକ ? ଚିହ୍ନା ନାହିଁ, ପରିଚୟ ନାହିଁ, ମୋତେ ମା' ବୋଲି ଡାକି ପାରୁଛନ୍ତି। ମୁଁ କ'ଣ ସତରେ ତାଙ୍କର ମା'ଡାକ ଶୁଣିବା ପାଇଁ ଯୋଗ୍ୟ ? କ'ଣ ଦେଖିଲେ ସେ ମୋ ଭିତରେ। ଏମିତି ବହୁତ କଥା ଭାବୁ ଭାବୁ ପରେ ତାଙ୍କର ପ୍ରକୃତ ପରିଚୟ ଜାଣିଲି। ସେ ଥିଲେ ଡ. ପ୍ରଦୀପ୍ତ କୁମାର ମିଶ୍ର। ଖଣ୍ଡଗିରି 'ଶ୍ରୀ ଅରବିନ୍ଦ ପୂର୍ଣ୍ଣାଙ୍ଗ ଶିକ୍ଷାକେନ୍ଦ୍ର'ର ପୂର୍ବତନ ଅଧକ୍ଷ। କି ସରଳ ଅମାୟିକ ମାନବପ୍ରେମୀ ମଣିଷଟିଏ ସେ। ଘରେ ଆସି ତାଙ୍କ ପ୍ରଦତ୍ତ 'ସୁଧାଧାରା' ପତ୍ରିକାଟି ପଢ଼ିଲି। ତାଙ୍କ ଶିକ୍ଷକ ଜୀବନର ଅନୁଭୂତି "ମୋ ଶିକ୍ଷକ ଜୀବନ(୧୬)"ରେ ସେ ଯାହା ଲେଖିଛନ୍ତି ତାକୁ ପଢ଼ି ଭାବ ବିହ୍ୱଳ ହେଲି। ଟେଲିଫୋନ୍‌ରେ ତାଙ୍କୁ କହିଲି "ଆପଣଙ୍କ ଭଳି ଅପାର୍ଥିବ ଗୁଣ ସମ୍ପନ୍ନ ପୁଅ ପାଇ ମୁଁ ଆଜି ଧନ୍ୟ ହେଲି"। ସେ କହିଲେ "ମା', ମୁଁ ଅନୁଭବ କଲି ଯେ କେବଳ ଆପଣଙ୍କ ପାଇଁ ହିଁ ମୁଁ ସେଠାକୁ ଯାଇଥିଲି। ଆପଣ ରତ୍ନଗର୍ଭା। ଆପଣଙ୍କୁ ପ୍ରଣାମ। ମୁଁ ସେ ଆଡ଼େ ଗଲେ ନିଶ୍ଚୟ ଆପଣଙ୍କୁ ଦେଖା କରିବି।" ସେ ଆହୁରି କହିଲେ ଯେ ତାଙ୍କର ସେଦିନ ଅନ୍ୟ ଏକ ପାଠଚକ୍ରରେ ଅତିଥି ଭାବରେ ଯୋଗଦେବାର ଥିଲା, ମାତ୍ର ସେ ସେଠାକୁ ନଯାଇ ପୁସ୍ତକ ଉନ୍ମୋଚନ ଉତ୍ସବକୁ ଆସିବା ଏବଂ ତଳେ ବସି ପ୍ରସାଦ ସେବନ କରିବାକୁ ଜାଗା ନ ପାଇବା,

ମୋ ପତ୍ରରୁ କଞ୍ଚାଲଙ୍କା ଫାଳେ ତାଙ୍କ ପତ୍ରକୁ ନେବା (ସେ ଆଦୌ ଲଙ୍କା ଖାଆନ୍ତି ନାହିଁ) ଏସବୁ ଘଟଣା ଯେମିତି ଆପେ ଆପେ କାହା ପ୍ରେରଣାରେ ଘଟି ଯାଉଥିଲା। ଏବେ ମଧ୍ୟ ଟେଲିଫୋନରେ ତାଙ୍କ ଠାରୁ ସେଇ ସମ୍ମାନ, ସେଇ ମାତୃଭାବର ପରିଚୟ ମୁଁ ପାଉଛି। କୌଣସି କାରଣ ନଥାଇ ତାଙ୍କ ସାଙ୍ଗରେ ଯାହା ସବୁ ଘଟିଲା ଏବଂ ମନ ଭିତରେ ଯେଉଁ ବିମଳ ଆନନ୍ଦର ଉଚ୍ଛ୍ୱାସ ଏବେବି ଅନୁଭୂତ ହେଉଛି, ଏ ନିଶ୍ଚୟ ମାତୃକୃପା। କେବଳ ସେତିକି ନୁହେଁ, ମାତୃ ଦିବସର ଠିକ୍ ପରଦିନ (ଫେବୃୟାରୀ ୨୨ ତାରିଖ) କାଳୁପଡ଼ା 'ଶ୍ରୀ ଅରବିନ୍ଦ ପୂର୍ଣ୍ଣାଙ୍ଗ ଶିକ୍ଷାକେନ୍ଦ୍ର' ବୁଲି ଦେଖିବାର ସୁଯୋଗ ମିଳିଲା। କାଳୁପଡ଼ା ପୂର୍ଣ୍ଣାଙ୍ଗ ଶିକ୍ଷାକେନ୍ଦ୍ରର କି ଶାନ୍ତ ମନୋମୁଗ୍ଧକର ପରିବେଶ। ଅନ୍ତରରେ ବିମଳ ଆନନ୍ଦ ଭରିଗଲା। ସେଠାରେ ପ୍ରକୃତିର କମନୀୟ ସୃଷ୍ଟି ପୁଷ୍ପ ସମ୍ଭାର ଦେଖି କ୍ଷଣକାଳ ପାଇଁ ସଂସାର ଯାତନା ମନରୁ ଉଭେଇ ଗଲା। ଅଧ୍ୟକ୍ଷ ମହାଶୟ ପଣ୍ଡିଚେରୀ ଆଶ୍ରମରୁ ଆସିଥିବା 'ଶ୍ରୀ ଅରବିନ୍ଦଙ୍କ ବାଣୀ (ମା'ଙ୍କ ଜନ୍ମଦିନର ଆଶୀର୍ବାଦ) ପ୍ରଦାନ କଲେ। ଭାବିଲି କି ଅପୂର୍ବ ସଂଯୋଗ, କି ଦିବ୍ୟ ଆନନ୍ଦ। ଦୁଇ ଚାରିଦିନ ପର୍ଯ୍ୟନ୍ତ ସେହି ଦିବ୍ୟଭାବ ମୋ ଅନ୍ତରକୁ ଆଚ୍ଛନ୍ନ କରି ରଖିଥିଲା। ଦିବ୍ୟ ଜନନୀଙ୍କର ଜୟ ହେଉ।



# ବଶିଷ୍ଠ ଯୋଗାଶ୍ରମ ଓ ଦୁର୍ଗାପୂଜା କୋଭିଡ୍ ୧୯

ଭୁବନେଶ୍ୱର ରବି ଟକିଜ୍ ଛକଠାରୁ ଟଙ୍କପାଣି ରୋଡ୍‌ରେ ଗଲେ କେନାଲ ପରେ ପରେ ପଡ଼େ 'ବଶିଷ୍ଠ ଯୋଗାଶ୍ରମ'। ଆଶ୍ରମର ପ୍ରକୃତ ନାମ "ଆର୍ଯ୍ୟ ଋଷିକୁଳ ବଶିଷ୍ଠ ଯୋଗାଶ୍ରମ"। କିନ୍ତୁ ସମସ୍ତେ ଏହି ଆଶ୍ରମକୁ ବିଷ୍ଣୁ ମନ୍ଦିର ବୋଲି କହିଥାନ୍ତି। ଆଶ୍ରମ ଅଧ୍ୟକ୍ଷ ଶ୍ରୀମଦ୍ ଜୟଦେବ ବ୍ରହ୍ମଚାରୀ କହନ୍ତି ବାବା ଶ୍ରୀମଦ୍ ବ୍ରହ୍ମର୍ଷି ପାଗଳାନନ୍ଦ ଠାକୁର ହେଉଛନ୍ତି ଏ ଆଶ୍ରମର ପ୍ରତିଷ୍ଠାତା। ୧୯୪୯ ମସିହା ବେଳକୁ ଭୁବନେଶ୍ୱରରେ ଅନେକ ଶିବ ମନ୍ଦିର ଥିଲା। ରାଧାକୃଷ୍ଣ ମନ୍ଦିର ନଥିଲା। କେବଳ ଏହି ଆଶ୍ରମରେ ରାଧାକୃଷ୍ଣ ମୂର୍ତ୍ତି ପୂଜା ପାଉଥିଲେ। ତେଣୁ ଲୋକେ ଏହାକୁ ବିଷ୍ଣୁ ମନ୍ଦିର ବୋଲି କହିବା ଆରମ୍ଭ କଲେ ଏବଂ ସେହିଦିନଠାରୁ ଏହି ଆଶ୍ରମଟି ବିଷ୍ଣୁ ମନ୍ଦିର ନାମରେ ଲୋକ ମୁଖରେ ପରିଚିତ।

ଖ୍ରୀ: ୧୯୫୫ ମସିହାରେ ଭୁବନେଶ୍ୱରର ପ୍ରଥମ ମୃଣ୍ମୟ ମୂର୍ତ୍ତି ଦୁର୍ଗାପୂଜା ଏହି ଆଶ୍ରମ ସମ୍ମୁଖରେ ଥିବା ପଡ଼ିଆରେ ଆରମ୍ଭ ହୋଇଥିଲା। କଲିକତାରୁ କାରିଗର ଆସି ଦୁର୍ଗା ମୂର୍ତ୍ତି ତିଆରି କରୁଥିଲେ। ୧୯୭୬ ମସିହାରେ ଟ୍ରକ୍ ଭଡ଼ା ଦେବା ପାଇଁ ଅର୍ଥ ବାଧକ ହେବାରୁ ଦୁର୍ଗାମେଢ଼ ବିସର୍ଜନ ହୋଇ ନପାରି ଏକ ବର୍ଷ ପଡ଼ି ରହିଲା। ତା' ପରବର୍ଷ ସ୍ଥାନୀୟ ଲୋକଙ୍କ ସହାୟତାରେ ନିକଟରେ ଥିବା ଚିଲ୍ଲୀ ପୋଖରୀରେ ବିସର୍ଜନ କରାଗଲା। ଏଇ ଅସୁବିଧା ପରଠୁଁ ମୃଣ୍ମୟୀ ମୂର୍ତ୍ତି ବଦଳରେ କଂକ୍ରିଟ୍ ମୂର୍ତ୍ତି ତିଆରି ହୋଇ ପୂଜା ପାଉଛନ୍ତି। ପ୍ରତି ବର୍ଷ ଦୁର୍ଗାପୂଜା ସମୟରେ କେବଳ ରଙ୍ଗ କରା ଯାଉଛି। ୧୯୭୮ ମସିହାରେ ଆଶ୍ରମ ପ୍ରତିଷ୍ଠାତା ବ୍ରହ୍ମର୍ଷି ପାଗଳା ନନ୍ଦ ଠାକୁର ମହା ସମାଧିରେ ଲ୍ଲୀନ ହେଲେ।

ଆଶ୍ରମ ସହିତ ମୋର ସମ୍ପର୍କ ୧୯୮୦ ମସିହାରୁ। ସେହିଦିନ ଠାରୁ ଦେଖି ଆସିଛି ଆଶ୍ରମ ଅଧ୍ୟକ୍ଷ ଶ୍ରୀମଦ୍ ଜୟଦେବ ବ୍ରହ୍ମଚାରୀ ବାବାଙ୍କ ତତ୍ତ୍ୱାବଧାନରେ ପ୍ରତିବର୍ଷ ଦୁର୍ଗାପୂଜା ଜାକଜମକରେ ହୋଇ ଆସୁଅଛି। ଦୁର୍ଗା ମା'ଙ୍କ ପାଇଁ ମନ୍ଦିର ତିଆରି

ହୋଇଛି। ସମ୍ମୁଖରେ ଅଛି ଶିବ ମନ୍ଦିର। ମା' ମନ୍ଦିର ଭିତରେ ସବୁଦିନେ ବିରାଜିତ ଅଛନ୍ତି। ମନ୍ଦିର ପରିସରଟି ସବୁ ସମୟରେ ନିର୍ଜନ ଥାଏ। ମାତ୍ର ଦୁର୍ଗାପୂଜା ସମୟରେ ତାହା ଚଳ ଚଞ୍ଚଳ ଓ ଉତ୍ସବମୁଖର ହୋଇ ଉଠେ। ମନ୍ଦିର ପରିସରରେ ରହିଛି କନିଅର, ଶିବ କନିଅର, ନାଗପଦ୍ମ, କାଠଚମ୍ପା, ଟରାଟ, ଟଗର, ମନ୍ଦାର ଓ ଆମ୍ବ, ପଣସ, ଜାମୁ, ଲିମ୍ବ ପ୍ରଭୃତି ଫୁଲ ଓ ଫଳ ବୃକ୍ଷ। ବୃକ୍ଷ ଗୁଡ଼ିକର ଶୀତଳ ଛାୟା ଓ ଫୁଲ ଗଛ ଗୁଡ଼ିକର ପୁଷ୍ପ ସମ୍ଭାର ମନ୍ଦିର ପରିସରକୁ ରମଣୀୟ କରିଥାନ୍ତି। ପ୍ରତି ବର୍ଷ ଦୁର୍ଗାପୂଜା ପୂର୍ବରୁ କାରିଗର (ଆଶ୍ରମର ଶିଷ୍ୟ) ରଙ୍ଗ କରି ଦେଇ ଯାଆନ୍ତି। ନିରୀକ୍ଷଣ କଲେ ମା' ଜୀବନ୍ତ ପ୍ରତିମା ପରି ପ୍ରତୀୟମାନ ହୋଇଥାନ୍ତି। ପୂଜକମାନେ କଲିକତାରୁ ଆସି ପୂଜାର୍ଚ୍ଚନା ଓ ଚଣ୍ଡୀପାଠ କରିଥାନ୍ତି। ପୂଜକ (୰ତିନିକଡ଼ି ମହାପାତ୍ର)ଙ୍କ ଠାରୁ ଶୁଣିଛି ଏଇ କ୍ଷେତ୍ରକୁ ଆସି ମା'ଙ୍କର ପୂଜା କରିବାକୁ ତାଙ୍କୁ ଗୁରୁ ପାଗଳାନନ୍ଦ ନିର୍ଦ୍ଦେଶ ଦେଇଥିଲେ। ସେ ତାଙ୍କୁ ମାତୃ କୃପା ବୋଲି ଅନୁଭବ କରି ଅତି ନିଷ୍ଠାର ସହ ପୂଜା କରୁଥିଲେ। ତାଙ୍କର ଚଣ୍ଡୀପାଠ ଓ ଆରାଧନାକୁ ଲକ୍ଷ୍ୟ କରିଛି। ମାତୃ ଭାବରେ ତଲ୍ଲୀନ ଥାନ୍ତି। ତାଙ୍କ ଦେହାନ୍ତ ପରେ ତାଙ୍କ ପୁଅ ଓ ଜ୍ୱାଇଁ ଆସି ପୂଜାକାର୍ଯ୍ୟ ତୁଲାଉଛନ୍ତି।

ଏ ବର୍ଷର ପୂଜା ନିଆରା। ମହାମାରୀ 'କରୋନା' ପାଇଁ ମା'ଙ୍କର ପୂଜାରେ ଆଡ଼ମ୍ବର ନାହିଁ। ସାଜସଜ୍ଜା ନାହିଁ। ଗହଳ ଚହଳ ନାହିଁ। ବିଗତ ବର୍ଷ ପରି ଦୂର ଦୂରାନ୍ତରୁ ଆଶ୍ରମର ଭକ୍ତ ଶିଷ୍ୟମାନେ ଆସି ନାହାନ୍ତି। ନିର୍ଦ୍ଧାରିତ ପୂଜକମାନେ ମଧ୍ୟ କଲିକତାରୁ ଆସି ପାରି ନାହାନ୍ତି। ବୟସାଧିକ୍ୟ ଯୋଗୁ ବାବା (ବ୍ରହ୍ମଚାରୀ ବାବା) ସମସ୍ତ ଦାୟିତ୍ୱ ହସ୍ତାନ୍ତର କରି ଦେଇଛନ୍ତି। ତେଣୁ ଆଶ୍ରମ ପରିଚାଳକ ଅନ୍ୟ ଜଣେ ବ୍ରାହ୍ମଣଙ୍କୁ ପୂଜା ପାଇଁ ଠିକ୍ କରିଥାନ୍ତି। ସେ ମହାଶୟ ମଧ୍ୟ ଅନ୍ୟତ୍ର ପୂଜା ଦାୟିତ୍ୱ ଗ୍ରହଣ କରିଥାନ୍ତି। ସେଦିନ ଥିଲା ମହାସପ୍ତମୀ। ପୂଜକ ମହାଶୟ ଏଠିକାର ପୂଜା ଶେଷ କରି ଦାୟିତ୍ୱ ନେଇଥିବା ପୂଜା ମଣ୍ଡପକୁ ଚାଲିଗଲେ। ମହାଷ୍ଟମୀର ଶୁଭ ସକାଳ। ପ୍ରଭାତରୁ ମନ୍ଦାର, ଅପରାଜିତା ଫୁଲ ତୋଳି ମନ୍ଦିର ଦୁଆରେ ରଖିଲି। ଗୁରୁଦେବଙ୍କ କୃପାରୁ ଏଇ ମନ୍ଦିର ପରିସର ଭିତରେ ମୋତେ ରହିବାକୁ ସୁଯୋଗ ମିଳିଛି। ମନରେ କାହିଁକି କେଜାଣି ସଂକଳ୍ପ ଆସିଲା ଯଦି ପୂଜକ ମହାଶୟ ନ ଆସନ୍ତି ତା'ହେଲେ ମା'ଙ୍କୁ ମୁଁ ଫୁଲ, ଦୀପ, ଧୂପ, ଝୁଣା ଇତ୍ୟାଦି ଅର୍ପଣ କରିଦେବି ଓ ଦୁର୍ଗା ସହସ୍ର ନାମ ପାଠ କରିଦେବି। ମନକଥା ମନରେ ରହିଲା। ଶୀଘ୍ର ଗାଧୁଆ ପାଧୁଆ ସାରି ଦୁର୍ଗା ମନ୍ଦିର ଯାଇ ଦେଖିଲି ପୂଜକ ମହାଶୟ ସେ ପର୍ଯ୍ୟନ୍ତ ଆସି ନାହାନ୍ତି।

ବିକ୍ରମ ବାବୁ (ଶ୍ରୀଯୁକ୍ତ ବିକ୍ରମ ପ୍ରଧାନ) ମନ୍ଦିର ଭିତର ସଫା କରୁଛନ୍ତି। ପ୍ରକାଶଥାଉକି ମା'ଙ୍କ ମନ୍ଦିର ସମ୍ମୁଖ ମଣ୍ଡପରେ ବିକ୍ରମ ବାବୁ, ରବିବାବୁ (ଶ୍ରୀଯୁକ୍ତ ରବୀନ୍ଦ୍ର ନାଥ ସାହୁ) ଓ ମିଶ୍ରବାବୁ (ଶ୍ରୀଯୁକ୍ତ ହରମୋହନ ମିଶ୍ର) ପ୍ରତିଦିନ ଯୋଗ ଅଭ୍ୟାସ କରନ୍ତି। ବିକ୍ରମ ବାବୁ ପ୍ରତିଦିନ ଚମତ୍କାର ମାତୃ ବନ୍ଦନା ଗାଆନ୍ତି। ତାଙ୍କର ପ୍ରାର୍ଥନା, ମାତୃ ସ୍ତୋତ୍ର, ମାତୃ ବନ୍ଦନାରେ ପରିତ୍ୟକ୍ତ ପ୍ରାୟ ମନ୍ଦିର ପରିସରଟି ଚୈତନ୍ୟମୁଖର ହୋଇ ଉଠେ।

ଅଷ୍ଟମୀ ଦିନ ବିକ୍ରମ ବାବୁ ଧୂପ, ଦୀପ ଓ ପୂଜା ସାମଗ୍ରୀ ସାଙ୍ଗରେ ଆଣିଥିଲେ। ଯୋଗକୁ ଅଳ୍ପ ସମୟ ପରେ ମିଶ୍ର ବାବୁ ଆସି ପହଞ୍ଚିଲେ। ମିଶ୍ର ବାବୁ ମା'ଙ୍କୁ ନୈବେଦ୍ୟ ଅର୍ପଣ କଲେ। ବିକ୍ରମ ବାବୁ ଫୁଲହାର, ଧୂପ ଦୀପ ଅର୍ପଣ କରି ମାତୃ ବନ୍ଦନା, ଦୁର୍ଗା ସ୍ତୋତ୍ର ଗାଇଲେ। ମୁଁ ମୋ ସଂକଳ୍ପ ଅନୁସାରେ ଦୁର୍ଗା ସହସ୍ର ନାମ, ଅର୍ଗଳା ସ୍ତୋତ୍ର ଓ ଦୁର୍ଗା ତାଣ୍ଡବ ପାଠ କଲି। ଶେଷରେ ପୁଷ୍ପାଞ୍ଜଳି ଅର୍ପଣ କରି ଅପରାଧ ମାର୍ଜନା ପାଇଁ ପ୍ରାର୍ଥନା ଜଣାଇ ଆମେ ତିନିଜଣ ନିଜ ନିଜ ଘରକୁ ଫେରିଲୁ।

ଗୋଟିଏ କଥା ମନକୁ ଆସୁଛି। ଏଠାରେ ପ୍ରାସଙ୍ଗିକ ହେବ ଭାବି ତାହା ଲେଖୁଛି। ବିଗତ ବର୍ଷମାନଙ୍କରେ ପୂଜକମାନେ କଲିକତାରୁ ଆସିଥାନ୍ତି। ତାଙ୍କୁ ପୂଜା ପାଇଁ ଭୋଗରାଗ ଇତ୍ୟାଦି ଯୋଗାଇ ଦେଇଥାନ୍ତି ବାବାଙ୍କର ଜଣେ ଗୁରୁଭାଇ। କାରଣ ଆଶ୍ରମ ଓ ଦୁର୍ଗାମନ୍ଦିର ମଝିରେ ଟଙ୍କପାଣିରୋଡ଼ ରାଜରାସ୍ତାଟି ଯାଇଛି। ତେଣୁ ପୂଜା ଦ୍ରବ୍ୟ ଆଶ୍ରମରେ ପ୍ରସ୍ତୁତ କରି ଦୁର୍ଗାମନ୍ଦିରରେ ପହଞ୍ଚାଇ ଦେବାକୁ ଜଣେ ସାହାଯ୍ୟକାରୀ ଆବଶ୍ୟକ ହୋଇଥାଏ। ଗୋଟିଏ ବର୍ଷ ବାବାଙ୍କର ସାହାଯ୍ୟକାରୀ ଗୁରୁଭାଇ ଜଣକ ପୂଜାରେ ଆସି ପାରି ନଥିଲେ। ତାଙ୍କ ଜାଗାରେ ବାବାଙ୍କର ଜଣେ ଶିଷ୍ୟ (ଶ୍ରୀ ବିଶ୍ୱଜିତ୍ ମାନା) ପୂଜାର ଦାୟିତ୍ୱ ନିର୍ବାହ କରିଥିଲେ। ଦଶହରା ସରିଲା। ବାବା ବିଶ୍ୱଜିତ୍ ବାବୁଙ୍କୁ କହିଲେ, "ଏ ବର୍ଷ ମା'ଙ୍କର କୃପା ହେଇଛି।"

ବିଶ୍ୱଜିତ୍ ବାବୁ କହିଲେ, "କ'ଣ ହୋଇଛି ନ ହୋଇଛି ସେ କଥା ଆପଣ ଜାଣନ୍ତି। ମୁଁ କେବଳ ଆପଣଙ୍କ ନିର୍ଦ୍ଦେଶ ପାଳନ କରିଛି।"

ଦିବ୍ୟକୃପାକୁ କିଏ କେମିତି ଅନୁଭବ କରିବ ତାହା ବ୍ୟକ୍ତି ବିଶେଷ ଉପରେ ନିର୍ଭର କରିଥାଏ। ମାତୃକୃପା ଓ ଗୁରୁକୃପାକୁ ସେଦିନ ବିଶ୍ୱଜିତ୍ ବାବୁ ଅଭିନ୍ନ ଅନୁଭବ କରିଥିଲେ। ଘଟଣାଟି ମୋତେ ଶୁଣାଇବା ଦିନ ସେ ତାହାହିଁ ପ୍ରକାଶ କରିଥିଲେ। ତାଙ୍କ କହିବାନୁସାରେ ବାବା କୃପା କରି ତାଙ୍କୁ ମା'ଙ୍କ ସେବାରେ ନିଯୁକ୍ତ କରିଥିଲେ।

ମାତ୍ର ଜଗଜ୍ଜନନୀଙ୍କ ଇଚ୍ଛାରେ ହିଁ ସମସ୍ତ କାର୍ଯ୍ୟ ସମ୍ପାଦିତ ହୋଇଥାଏ ବୋଲି ବାବା କହିଥିଲେ। ପରେ ଶୁଣିଲି ବିଶ୍ୱଜିତ୍ ବାବୁଙ୍କର ଏକ ନିର୍ଦ୍ଦିଷ୍ଟ ଅସୁବିଧା ଦୂର ହୋଇ ଯାଇଥିଲା।

ସେଦିନ (ଦୁର୍ଗାଷ୍ଟମୀ)ଟି ଆମ ତିନିଜଣଙ୍କ ପାଇଁ ଥିଲା ଏକ ସ୍ମରଣୀୟ ଦିବସ। ମହାଷ୍ଟମୀରେ ଦୁର୍ଗାମୂର୍ତ୍ତିଙ୍କୁ ପୂଜାର୍ଚ୍ଚନା କରିବା ମହାଭାଗ୍ୟ ଛଡ଼ା ଆଉ କ'ଣ ହୋଇପାରେ ? ଏ ମହାର୍ଘ ଅବସର କେବଳ ମା'ଙ୍କ କୃପାରୁ ହିଁ ସମ୍ଭବ ହୋଇଥିଲା। ଏକେ ତ ମହାମାରୀ ଯୋଗୁ ଗହଳିଶୂନ୍ୟ ନିରୋଳା ମୁହୂର୍ତ୍ତ। ପୁଣି ପୂଜକ ମହାଶୟଙ୍କର ଅନୁପସ୍ଥିତି ସତେ ଯେମିତି ମା'ହିଁ ସୃଷ୍ଟି କରିଥିଲେ। ମିଶ୍ରବାବୁ (ହରମୋହନ ମିଶ୍ର) କହି ପକାଇଲେ, "ଏ ସୁଯୋଗ ଆମ ପାଇଁ ଉଦ୍ଦିଷ୍ଟ ଥିଲା।" ମୋତେ ଲାଗିଲା ବିକ୍ରମବାବୁ (ବିକ୍ରମ ପ୍ରଧାନ) ପ୍ରତିଦିନ ଯେଉଁ ମାତୃ ସଙ୍ଗୀତ ସାଧନା କରନ୍ତି ସେଦିନଟି ଥିଲା ତାଙ୍କ ପାଇଁ ସିଦ୍ଧି ଦିବସ। ମା'ଙ୍କ ସମ୍ମୁଖରେ ଦୁର୍ଗା ସହସ୍ର ନାମ ପାଠ କରିବାର ବହୁଦିନର ଅଭିଳାଷ ମଧ୍ୟ ମୋର ସେଦିନ ପୂର୍ଣ୍ଣ ହୋଇଥିଲା। (ମୁଁ ପ୍ରତିଦିନ ସନ୍ଧ୍ୟାରେ ଦୁର୍ଗାସହସ୍ର ନାମ ପାଠ କରେ, କିନ୍ତୁ ମନ୍ଦିରରେ ମା'ଙ୍କ ସମ୍ମୁଖରେ କେବେ କରି ପାରି ନଥିଲି।) ପରେ ଶୁଣିଲି ପୂଜକ ବ୍ରାହ୍ମଣ ଦୁର୍ଗାଷ୍ଟମୀ ଦିନ ଅନୁପସ୍ଥିତ ରହିବେ ବୋଲି ଆଶ୍ରମ ପରିଚାଳକଙ୍କ ଠାରୁ ଅନୁମତି ନେଇଥିଲେ। ସେକଥା ଆମକୁ ଅଜଣା ଥିଲା। ଆମେ ଅନୁଭବ କଲୁ ଏହା ଥିଲା ଆମ ତିନିଜଣଙ୍କ ପାଇଁ ଦିବ୍ୟକୃପା।



# ରବି ଦାଦାଙ୍କୁ ପ୍ରଣାମ

ରବି ଦାଦାଙ୍କୁ ମୁଁ ଡାକେ ଦାଦା, ମୋ ପୁଅ ଝିଅ ଡାକନ୍ତି ଦାଦା, ୰ବୈକୁଣ୍ଠ ବିଶ୍ୱାଳ ଡାକୁଥିଲେ ଦାଦା, ମୋର ସମବୟସ୍କ, ବରିଷ୍ଠ, କନିଷ୍ଠ ବନ୍ଧୁମାନେ ମଧ୍ୟ ଡାକନ୍ତି ଦାଦା। ଯେମିତି ଆକାଶରେ କମନୀୟ ଜ୍ୟୋତ୍ସ୍ନା ବିମଣ୍ଡିତ ଚନ୍ଦ୍ରମା, ଆବାଳ ବୃଦ୍ଧବନିତା ସମସ୍ତଙ୍କର ମାମୁଁ, ସେମିତି ବରିଷ୍ଠ କନିଷ୍ଠ ନିର୍ବିଶେଷରେ ରବିଦାଦା ସମସ୍ତଙ୍କର ଦାଦା। ରବିଦାଦାଙ୍କୁ ସମସ୍ତେ ବିପ୍ଳବୀ ରବିଦାଶ ବୋଲି ଜାଣନ୍ତି। ସେ ଏକ ବିରଳ ବ୍ୟକ୍ତିତ୍ୱ, ଏକ ଇତିହାସ ମଧ୍ୟ। ତାଙ୍କ ବିଶାଳ ବ୍ୟକ୍ତିତ୍ୱକୁ ବିସ୍ତାରି କହିବାର ସାମର୍ଥ୍ୟ ମୋର ନାହିଁ। କେବଳ ତାଙ୍କ ସ୍ନେହ ସ୍ନିଗ୍ଧ ମମତାର ଛାଇତଳେ ବିତାଇଥିବା କେତୋଟି ଅନ୍ତରଙ୍ଗ ମୁହୂର୍ତ୍ତକୁ ମୁଁ ଝୁରୁଛି। ତାଙ୍କୁ ପ୍ରଥମେ ଦେଖିଥିଲି ଭଦ୍ରକ କଲେଜରେ ପଢ଼ିଲାବେଳେ ୰ବୈକୁଣ୍ଠ ବିଶ୍ୱାଳଙ୍କ ସହିତ। ସେତେବେଳେ ତାଙ୍କ ବିଷୟରେ ମୁଁ କିଛି ଜାଣିନଥିଲି। କିଏ ସେ ଲୋକ, ବୈକୁଣ୍ଠ ବିଶ୍ୱାଳଙ୍କ ସହିତ ତାଙ୍କର ସମ୍ପର୍କ କ'ଣ, କାହିଁକି ଭଦ୍ରକ କଲେଜକୁ ସେ ବାରମ୍ବାର ଆସୁଛନ୍ତି ଏସବୁ ପ୍ରଶ୍ନ ମନ ଭିତରେ ଆସିଥିଲା ସେତେବେଳେ। ତା'ପରେ ଧୀରେ ଧୀରେ ଜାଣିଲି ସେ କିଛି ଜନମଙ୍ଗଳ କାର୍ଯ୍ୟରେ ଲିପ୍ତ ଅଛନ୍ତି ଏବଂ ସରକାରଙ୍କ କୋପ ଦୃଷ୍ଟିର ଅନ୍ତରାଳରେ ନିଜକୁ ଲୁଚାଇ ରଖିଛନ୍ତି। ୧୯୭୧ ମସିହା, ଦିନେ ଶୁଣିଲି ରବିଦାଦା ଆରେଷ୍ଟ ହୋଇଛନ୍ତି। ଭଦ୍ରକ କଲେଜରେ ତାଙ୍କ ସଂସ୍ପର୍ଶରେ ଆସୁଥିବା ବନ୍ଧୁମାନେ ଦୁଃଖିତ ହେଲେ। ତାଙ୍କର କନିଷ୍ଠ ଭ୍ରାତୃପ୍ରତିମ ୰ବୈକୁଣ୍ଠ ବିଶ୍ୱାଳ ଦୁଃଖରେ ଭାଙ୍ଗି ପଡ଼ିଲେ। ଭଦ୍ରକ କଲେଜରୁ ଛାତ୍ର ଜୀବନ ସରିଲା। ମୁଁ ଯାଇ ରହିଲି ସୁନ୍ଦରଗଡ଼ ଜିଲ୍ଲାର ସୀମାନ୍ତ ଅଞ୍ଚଳରେ ଥିବା ଏକ ବାଳିକା ବିଦ୍ୟାଳୟରେ ଶିକ୍ଷୟିତ୍ରୀ ଭାବରେ। ସ୍କୁଲଟିର ନାଁ 'ବନ୍ଧବାହାଲ ବାଳିକା ବିଦ୍ୟାଳୟ। ବନ୍ଧବାହାଲ ଗାଁରୁ ପାଞ୍ଚ କିଲୋମିଟର ଦୂରରେ ଅବସ୍ଥିତ 'କିଞ୍ଜିରିକେଲା' ଗାଁ। କିଞ୍ଜିରିକେଲା ଗାଁର ଶ୍ରୀଯୁକ୍ତ ବସନ୍ତ ତ୍ରିପାଠୀ ଥିଲେ ସେ ଅଞ୍ଚଳର ଜଣେ ଗଣ୍ୟମାନ୍ୟ ବ୍ୟକ୍ତି। ହୋମିଓପାଥି ଔଷଧରେ ରୋଗୀ ଚିକିତ୍ସା କରନ୍ତି। ସମ୍ପର୍କରେ ସେ ରବିଦାଦାଙ୍କର ମଉସା ହିସାବ ହେବେ। ଦିନେ ସେ ମୋତେ ଖୋଜି ଖୋଜି ଆସି

ବନ୍ଧବାହାଲରେ ପହଞ୍ଚିଲେ। ମୋର ତାଙ୍କ ସହ ଆଗରୁ ପରିଚୟ ନଥିଲା। ତାଙ୍କ ଠାରୁ ଶୁଣିଲି ରବିଦାଦା ତାଙ୍କୁ କହିଛନ୍ତି "ମୋ ଝିଅ ସେଠି ଅଛି, ଆପଣ ଯାଇ ତା'ର ଭଲମନ୍ଦ ବୁଝୁଥିବେ।" ରବିଦାଦାଙ୍କ କଥା ରକ୍ଷା କରି ତ୍ରିପାଠୀ ମହାଶୟ ପ୍ରାୟ ଅଧିକାଂଶ ରବିବାରରେ ମୋତେ ଦେଖା କରୁଥିଲେ। ସେଇଠି ଅନୁଭବ କରିଥିଲି ରବିଦାଦା ମୋତେ କେତେ ଭଲ ପାଉଥିଲେ ଏବଂ ଝିଅ ପରି ଭଲ ପାଉଥିଲେ। ଛୁଟିରେ ଭୁବନେଶ୍ୱର ଆସିଲେ ଦାଦାଙ୍କ ସହ ଦେଖାହୁଏ। ତାଙ୍କ 'ବିପ୍ଳବ ସନ୍ଦେଶ' ପତ୍ରିକା ନିମିତ୍ତ ୰ ବୈକୁଣ୍ଠ ବିଶ୍ୱାଳଙ୍କ ଠାରୁ ଲେଖା ନେବାପାଇଁ ସେ ଆସନ୍ତି। ଗୋଟିଏ ଗୋଟିଏ ଲେଖା ପାଇଁ ତାଙ୍କୁ ବାରମ୍ବାର ଆସିବାକୁ ପଡୁଥିଲା। ସାମାନ୍ୟ ଗୋଟିଏ ଲେଖାପାଇଁ ଦାଦାଙ୍କର ବାରମ୍ବାର ଆସିବାଟା ମୋତେ ମାଡ଼ି ପଡ଼େ। ସହି ନପାରି ଦିନେ ମୁଁ ତାଙ୍କୁ କହିଲି "ଦାଦା, ୟାଙ୍କ ଲେଖା ନହେଲେ କ'ଣ ଆପଣଙ୍କ ପତ୍ରିକା ବାହାରି ପାରିବ ନାହିଁ? ଆପଣ କଷ୍ଟ କରି ଏତେଥର ଆସୁଛନ୍ତି, ମୋତେ ଭଲ ଲାଗୁନାହିଁ।" ଦାଦା କହିଲେ, "ତା' ଯଦି ହେଉଥାନ୍ତା ମା' ମୁଁ କାହିଁକି ଆସୁଥାନ୍ତି? ଆସୁଛି ବୋଲି ସିନା ତୋତେ ଓ ତୋ ପୁଅ ଝିଅଙ୍କୁ ଦେଖିକରି ଯାଉଛି।" ଆଉ ଥରେ ଗ୍ରୀଷ୍ମ ଛୁଟିରେ ମୁଁ ଭୁବନେଶ୍ୱରରେ ଥାଏ। ବୈକୁଣ୍ଠ ବିଶ୍ୱାଳଙ୍କୁ କହିଲି "ମୁଁ ରବିଦାଦାଙ୍କ ଘର ଦେଖିନାହିଁ। ଥରେ ମୋତେ ତାଙ୍କ ଘର ଦେଖାଇ ଆଣ। 'ହଉ କାଲି ଯିବା' କହି ସେ ରାଜିହେଲେ। ପରଦିନ ମୁଁ ସଜହୋଇ ବାହାରିଲା ବେଳକୁ କୌଣସି କାରଣ ନକହି ସେ ଶୋଇ ରହିଲେ ଯେ ଆଉ ଉଠିଲେ ନାହିଁ। ଯିବା ବନ୍ଦ ହେଲା, ମୋ ମନ ଭାଙ୍ଗିଗଲା। ରାଗ ଅଭିମାନରେ ମନ ଭରିଗଲା। ଏ ଲୋକ ସାଙ୍ଗରେ ଆଉ ଜୀବନରେ କେତେବେଳେ କେଉଁଠିକି ଯିବାକୁ ମନ କରିବି ନାହିଁ ବୋଲି ମନେ ମନେ ନିଷ୍ପତ୍ତି ନେଲି। ଜୀବନର ସବୁ କ୍ଷେତ୍ରରେ ବିଫଳତା ଭୋଗି ଭୋଗି ବୈକୁଣ୍ଠ ବିଶ୍ୱାଳ ସେତେବେଳକୁ ବିଷାଦଗ୍ରସ୍ତ ଥିଲେ। ତା' ପରଦିନ ରବିଦାଦା ଆସିଲେ। ତାଙ୍କୁ ସବୁକଥା କହି ଅଭିଯୋଗ ବାଢ଼ିଲି। କିନ୍ତୁ ସେ କ'ଣ କଲେ? ଦୋଷ ତାଙ୍କ ନିଜ ଉପରକୁ ନେଲେ। କହିଲେ "ମୁଁ ତ ତତେ ଡାକିନାହିଁ। ଦୋଷ ମୋର"। ଆଉ କିଛି କହିନପାରି ନିରବ ରହିଲି। ମନେ ପଡୁଛି ସେ ଦୁଃଖଦ ଦିନ। ବୈକୁଣ୍ଠ ବିଶ୍ୱାଳଙ୍କର ଅକାଳ ବିୟୋଗ ଘଟିଥାଏ। ୰ଅଭୟ ସିଂହ ('ସଚିତ୍ର ବିଜୟା'ର ପୂର୍ବତନ ସମ୍ପାଦକ)ଙ୍କ ସହିତ ରବିଦାଦା ଆସିଥାନ୍ତି। ମୋ ମୁଣ୍ଡକୁ ତାଙ୍କ ଛାତିରେ ଜାକି ଧରି କହିଲେ "ମା' ଜୀବନରେ ବହୁତ କଷ୍ଟ ସହିଲୁଣି, ଏ-କଷ୍ଟ ବି ତୋତେ ସହିବାକୁ ଥିଲା। ତୋ ପିଲାମାନେ ମଣିଷ ହୋଇଯିବେ, ଚିନ୍ତା କରନା।" ଆଜି ରବିଦାଦା ନାହାନ୍ତି। ତାଙ୍କର

ସାନ୍ତ୍ୱନା ବାଣୀ ମନେପଡ଼ି ଛାତି ଥରାଇ ଦେଉଛି। ମୋ ପୁଅ ଝିଅଙ୍କୁ ସେ ନାତି ନାତୁଣୀ ନ୍ୟାୟରେ ଭଲ ପାଆନ୍ତି। ବାବୁ (ମୋ ପୁଅ) ଦାରିଦ୍ର୍ୟ ଓ ଅନାହାର ଉପରେ ରିସର୍ଚ୍ଚ କୋର୍ଷ କରୁଥାଏ ଜବାହରଲାଲ ନେହେରୁ ବିଶ୍ୱବିଦ୍ୟାଳୟରେ। ସେତେବେଳେ ରବିଦାଦା ଦାରିଦ୍ର୍ୟ ପ୍ରପୀଡ଼ିତ କଳାହାଣ୍ଡିର ନିପଟ ମଫସଲରେ କପାଚାଷ, ସୂତା କଟା ଓ ଲୁଗାବୁଣା ମାଧ୍ୟମରେ ଲୋକମାନଙ୍କର କର୍ମ ନିଯୁକ୍ତି ପାଇଁ କାମ କରୁଥାନ୍ତି। ରିସର୍ଚ୍ଚ କାମରେ ପ୍ରତ୍ୟକ୍ଷ ଅନୁଭୂତି ପାଇଁ ବାବୁ ତାଙ୍କ ସହ ପରାମର୍ଶ କଲା। ଦାଦା ତାକୁ ସାଙ୍ଗରେ ନେଇ କଳାହାଣ୍ଡି ଗଲେ। ସେଠି ତା'ର ରହିବା ପାଇଁ ଘର, ରୋଷେଇ କରିଦେବା ପାଇଁ ଲୋକ, ଯେତେବେଳେ ଘରକୁ ଆସିବ ବସ୍‌ଷ୍ଟାଣ୍ଡରେ ପହଞ୍ଚାଇ ଦେବାପାଇଁ ଆଦି ସମସ୍ତ ବ୍ୟବସ୍ଥା କରି ଦେଇଥିଲେ। ପୁସ୍ତକ ମେଳା ଦେଖିବାକୁ ଗଲେ ମୁଁ ଏକାମ୍ର ହାଟରେ ରବିଦାଦାଙ୍କ ପାଖକୁ ଯାଏ। 'କଳାହାଣ୍ଡି ବିକାଶ ପରିଷଦ'ର ଖଦୀ ଦୋକାନରେ ତାଙ୍କ ସହ ଦେଖାହୁଏ। ଭାରି ଖୁସି ହୋଇଯାନ୍ତି ଦେଖିଲେ। ଡାକିନେଇ କ୍ୟାଣ୍ଟିନ୍‌ରେ ଜଳଖିଆ ଖୁଆନ୍ତି। ଖଦି କନା ଯାହା ଭଲ ଲାଗୁଛି ବାଛିକରି ଆଣିବାକୁ କହନ୍ତି। ତାଙ୍କର ସେଇ ଦୋକାନର ଦରଜୀ ସିଲେଇ କରି ଦେଇଥିବା ଖଦୀକନାର ତକିଆ ଖୋଳ, କୁଷନ କଭରକୁ ମୁଁ ଆଜିଯାଏ ସାଇତି ରଖିଛି।

ଦାଦାଙ୍କ ସାନଝିଅ ପୁବା ବାଣୀ ବିହାରରେ ପି.ଜି. ପଢ଼ିବା ପାଇଁ ପ୍ରବେଶିକା ପରୀକ୍ଷା ଦେଉଥାଏ। ଦାଦା ବାହାରେ ଅପେକ୍ଷା କରିଥାନ୍ତି। ତାଙ୍କ ସାଙ୍ଗରେ ଚେତନା (ମୋ ଝିଅ) ଥାଏ। ଦାଦା ଚେତନାକୁ ପଚାରିଲେ "ଆଚ୍ଛା କହିଲୁ ଯେଉଁମାନେ ଏଣ୍ଟ୍ରାନ୍ସରେ କୃତକାର୍ଯ୍ୟ ନହୋଇ ପାରିବେ ତାଙ୍କର କ'ଣ ହେବ ? ସେଦିନ ଚେତନା ଦାଦାଙ୍କର ଏ ପ୍ରଶ୍ନରେ ଅଭିଭୂତ ହୋଇ ଯାଇଥିଲା। ମୋତେ କହିଥିଲା "ବୋଉ, ରବିଦାଦା ଏଣ୍ଟ୍ରାନ୍ସ ନପାଇଲେ ପୁବାର କ'ଣ ହେବ କହୁନଥିଲେ। ଅନ୍ୟମାନଙ୍କର କ'ଣ ହେବ ସେ ତାହାହିଁ ଚିନ୍ତା କରୁଥିଲେ।" ଏ ଥିଲା ଦାଦାଙ୍କର ମଣିଷ ପ୍ରତି ନିଃସ୍ୱାର୍ଥ ଭଲପାଇବା। ପ୍ରକୃତରେ ସେ ଥିଲେ 'ପରାର୍ଥ ପଥିକ'।

ଦାଦାଙ୍କର ଗୋଟିଏ କଥା ମନେ ପଡ଼ିଲେ ମନରେ ଯେତିକି ଆବେଗ ସୃଷ୍ଟି ହୁଏ, ସେତିକି ହସମାଡ଼େ ମଧ୍ୟ। ଥରେ ଦାଦା କବି ମନମୋହନ ମିଶ୍ରଙ୍କ ଗ୍ରନ୍ଥାବଳି କାମରେ ଟଙ୍କପାଣି ରୋଡ୍ ଆସିଥିଲେ। ଆମ ଘରେ ମଧ୍ୟାହ୍ନ ଭୋଜନ ପାଇଁ ରାଜି ହୋଇଥାନ୍ତି। ଅତି ନିରାଡ଼ମ୍ବର ତାଙ୍କର ଭୋଜନ। ରୁଟି ଦି'ପଟ, ଭଜା କି ତରକାରି ଟିକେ ହେଲେ ତାଙ୍କର ହୋଇଗଲା। ତାଙ୍କ ଚା'ରେ ତ ଚିନି କି ଲୁଣ କିଛି ପଡ଼େନାହିଁ। ମୋ ଝିଅ ପଚାରିଲା "ସକାଳୁ କ'ଣ ଖାଇଥିଲେ ଦାଦା ?" କହିଲେ, "ଘରୁ (ତାରପୁର)

ଆସିଲାବେଳେ ନିଜେ ଖେଚୁଡ଼ି ରାନ୍ଧି ଖାଇକରି ଆସିଥିଲି।" ଚେତନା (ମୋ ଝିଅ) ଆଶ୍ଚର୍ଯ୍ୟ ହେଲା। ଏତେ ବୟସରେ ବି ଦାଦା ନିଜେ ଖେଚୁଡ଼ି ରାନ୍ଧି ପାରୁଛନ୍ତି। ଚେତନାକୁ ଖେଚୁଡ଼ିର ପ୍ରସ୍ତୁତି ପ୍ରଣାଳୀ ମଧ୍ୟ ଶିଖାଇ ଦେଲେ। ଖାଇସାରି କିଛି ସମୟ ଦୁଃଖ ସୁଖ ହେଲେ। ମୋ ପୁଅ କଥା ପଚାରିଲେ। ମୋ ପୁଅ (ଚିନ୍ମୟ ବିଶ୍ୱାଳ) ସେତେବେଳକୁ ଆଇ.ପି.ଏସ୍ ପାଇ ଦିଲ୍ଲୀରେ ଡି.ସି.ପି ଥାଏ। ମୋତେ ପଚାରିଲେ "ତୋ ପୁଅ ତତେ ପଇସା ଦେଉଛି ?" ମୁଁ କହିଲି "ନା, ମତେ ଦେଉନାହିଁ।" ଦାଦା କହିଲେ "ତତେ ତ ଦେଉନାହିଁ, ମତେ ବି ଦେଉନାହିଁ। ପୁବା (ଦାଦାଙ୍କ ସାନ ଝିଅ) ଡାକିଛି ଏଥର ଦିଲ୍ଲୀ ଗଲେ ତୋ ପୁଅକୁ ପଚାରିବି ଆମକୁ ତ ଦେଲାନାହିଁ, ଚାକିରୀ କରିଛି ପଇସା କାହାକୁ ଦେବ"। ପୁଅ ପଇସା ଦେଉନାହିଁ। ମୋ ମନରେ କାଳେ ଦୁଃଖ ଆସୁଥିବ ସେଥିପାଇଁ କେତେ ସହଜରେ ଦାଦା କଥାକୁ ହାଲୁକା କରିଦେଲେ। ପରେ ବାବୁ ଏକଥା ଶୁଣି ବହୁତ ହସିଲା। ସବୁବେଳେ ଟେଲିଫୋନ୍ କରି ମୋର ଅସୁସ୍ଥତା ବିଷୟରେ ପଚାରନ୍ତି। କେତେଥର କହିଛନ୍ତି "ତତେ କଟକ ଆଣି ବ୍ରହ୍ମାନନ୍ଦ (ଡକ୍ଟର ବ୍ରହ୍ମାନନ୍ଦ ଦାସ) କୁ ଦେଖାଇବି। ବାରମ୍ବାର କଟକ ଯାଇ ବ୍ରହ୍ମାନନ୍ଦ ଭାଇଙ୍କ ପାଖରେ ଚିକିତ୍ସା ଜାରି ରଖିବା ସମ୍ଭବ ହେବନାହିଁ କହି ମୁଁ ତାଙ୍କ କଥାକୁ ଟାଳିଦିଏ। ଏଇ ମହାମାରୀ କରୋନା ଆରମ୍ଭ ହେବା ଦିନଠାରୁ ତାଙ୍କ ସାଙ୍ଗରେ ଆଉ ଦେଖା ହୋଇ ପାରିନାହିଁ। ତାଙ୍କ ଦେହାନ୍ତର ତିନିଦିନ ପରେ ଡଲି (ତାଙ୍କ ଝିଅ) ମୋତେ କହିଲା "ମାଉସୀ, ବାପା ଶେଷ ବେଳକୁ ଆପଣମାନଙ୍କୁ ବହୁତ ଖୋଜିଲେ।" ସମ୍ଭାଳି ପାରିଲି ନାହିଁ ହୃଦୟର କୋହକୁ। ଯେତେ କାନ୍ଦିଲେ ଆଉ କ'ଣ ହେବ ? ନା ମୁଁ କଟକ ଯାଇ ତାଙ୍କୁ ଦେଖି ପାରିଲି ନା ସେ ମୋତେ ଦେଖିଲେ। ତାଙ୍କ ଅମର ଆତ୍ମାକୁ ଶତ ପ୍ରଣାମ।



# ଚିନ୍ତାମଣିଙ୍କୁ ଚିଠି

ଚିଠିଟିଏ ଲେଖିବି ଚିନ୍ତାମଣିଙ୍କୁ, ଶ୍ରୀଯୁକ୍ତ ଚିନ୍ତାମଣି ମହାନ୍ତିକଙ୍କୁ। କେମିତି ଲେଖିବି, ତାଙ୍କ ଠିକଣା ତ ଜାଣିନାହିଁ। ଏଇ କଥା ମନେ ମନେ ଭାବୁଥିଲି ଏବଂ ପଢୁଥିଲି ପୀତବାସ ରାଉତରାୟଙ୍କ ସମ୍ପାଦିତ ଶ୍ରୀ ଜଗନ୍ନାଥଙ୍କ ପୁସ୍ତକରେ, ବିଶ୍ୱ ଚିନ୍ତାମଣିଙ୍କ ଲୀଳା। ସିଦ୍ଧ କବିଙ୍କର ସିଦ୍ଧ ବାକ୍ୟ ମନେ ପଡ଼ିଲା। "ଚିନ୍ତାମଣି, ଚିନ୍ତାକଲେ ଆସିବେ ଏକ୍ଷଣି"। ଚିନ୍ତାମଣି ତ ଆସିଲେ ନାହିଁ ମାତ୍ର ଖୋଜୁଥିବା ଚିନ୍ତାମଣିଙ୍କର ଠିକଣା ପହଞ୍ଚାଇ ଦେଲେ। ସେହି ବହିରୁ ପାଇଲି କବି ଚିନ୍ତାମଣିଙ୍କର ଟେଲିଫୋନ ନମ୍ବର। ଚିଠିରେ ତାଙ୍କୁ ଦି'ପଦ ହୃଦୟର କଥା ଲେଖିବା ଆଗରୁ ମୁଁ ପରମ ଚିନ୍ତାମଣି ଓ ଖୋଜୁଥିବା ଚିନ୍ତାମଣିଙ୍କ ଉଦ୍ଦେଶ୍ୟରେ ଆବେଗଭରା ପ୍ରଣାମ ଜଣାଉଛି।

ଆପଣଙ୍କର ସ୍ୱର ପ୍ରଥମେ ଶୁଣିଥିଲି ସେଇଦିନ, ଯେଉଁଦିନ ଡ. ରାମଚନ୍ଦ୍ର ନାୟକଙ୍କ ଅଭିନନ୍ଦନ ଗ୍ରନ୍ଥ "ସାରସ୍ୱତ ଯାତ୍ରାର ଦରଦୀ ପଥିକ" ରେ ଲେଖିଥିବା ମୋର କେଇଧାଡ଼ି କଥା ଆପଣଙ୍କ ମନ ଛୁଇଁଥିଲା। ମୋତେ ନ ଦେଖି, ନ ଜାଣି ଟେଲିଫୋନ୍‌ରେ ଉତ୍ସାହଭରା ବାଣୀ ଶୁଣାଇଥିଲେ। ସେ ଗ୍ରନ୍ଥଟି ଥିଲା ସୁରଭିତ କୁସୁମର ଏକ ଗଜରା ହାର। ତା ଭିତରେ ମୋର ଘାସଫୁଲ ସଦୃଶ ଲେଖାଟିକୁ ଆପଣଙ୍କ ସାରସ୍ୱତ ସିଂହ ଦୃଷ୍ଟି ଯେ ଏଡ଼ାଇ ଦେଇନଥିଲା ତାହା ଜାଣି ବହୁତ ଖୁସି ହୋଇଥିଲି ସେଦିନ। ତା'ପରେ ମୋର ଏକ ସ୍ମୃତି ଆଲେଖ୍ୟ "ଯାହା ହଜାଇ ଦେଇଛି ଥରେ" ଆପଣଙ୍କ ପାଖକୁ ପଠାଇଥିଲି। ଆପଣ ଜଣେ ଅଜଣା ଅଶୁଣା ଲୋକର ଲେଖାକୁ ଅନାଦର କରିନଥିଲେ। ବରଂ ମୋ ଭିତରେ ପ୍ରେରଣାର ବୀଜ ବୁଣି ଦେଇଥିଲେ। ମନେଅଛି ଆପଣଙ୍କ କଥା- "ଆପଣଙ୍କ ବହିଟି ମୁଁ ଥରେ ପଢ଼ିସାରି ଦ୍ୱିତୀୟ ଥର ପଢୁଛି, ଲେଖାଗୁଡ଼ିକ ମୋତେ ଉତ୍ତର ଜୀବନରୁ ଆଦ୍ୟ ଜୀବନ (ଧୂଳି ଖେଳର ଜୀବନ)କୁ ନେଇଯାଉଛି। ଲେଖା ବନ୍ଦ କରିବେ ନାହିଁ"।

ଆପଣଙ୍କର ସେହି ପ୍ରେରଣାପ୍ରଦ ବାଣୀର ଫଳ ସ୍ୱରୂପ ପ୍ରକାଶ ପାଇଛି ମୋର ଅନ୍ୟ ଏକ ସୃଷ୍ଟି "ପେଡ଼ି ଆଳିମାଳିକା", ଯାହାକୁ ଭେଟି ଦେବାପାଇଁ ମୁଁ ଆପଣଙ୍କୁ

ମନେ ମନେ ଖୋଜୁଥିଲି । ପଢ଼ିଥିଲି ଚକ୍ରଧର ସାର୍ (ଡ. ଚକ୍ରଧର ବିଶ୍ୱାଳ) ଙ୍କ ଲେଖା । ବ୍ୟକ୍ତିର ବ୍ୟକ୍ତିତ୍ୱ ଜଣାପଡ଼େ ତାଙ୍କର ହାବଭାବ, ଚଳଣି ଏବଂ ବିନୟଯୁକ୍ତ ବ୍ୟବହାରରୁ । ଏଥିରୁ ପ୍ରଥମ ଦୁଇଟି ବିଷୟରେ ମୁଁ ଅନଭିଜ୍ଞ ଥିଲେ ସୁଦ୍ଧା ତୃତୀୟ ଗୁଣଟି ଯେ ଆପଣଙ୍କ ଚରିତ୍ରରେ ପୂର୍ଣ୍ଣ ପ୍ରକାଶିତ ତା'ର ପ୍ରମାଣ ଆପଣଙ୍କ ସାଙ୍ଗରେ ସ୍ୱଳ୍ପ କଥାବାର୍ତ୍ତାରୁ ଜାଣିପାରିଛି । ପଢ଼ିଛି ଆପଣଙ୍କ କବିତା 'ଦେବୀ', 'ମରୁଡ଼ି ଓଠର ଗୀତ', 'ଶୀତ', 'ତୁମେତ ବର୍ଷା ଋତୁଟିଏ', 'କିରିବୁରୁ ଜହ୍ନ' ଇତ୍ୟାଦି । ମୋର ଯାହା ହୃଦ୍‌ବୋଧ ହୋଇଛି ଛନ୍ଦହୀନ କବିତା ସୃଷ୍ଟିହିଁ ଆପଣଙ୍କ ଲେଖନୀର ଅନ୍ତଃସ୍ୱର । ପଢ଼ିଥିଲି ନବକଳେବର ସମୟରେ ସୁଦର୍ଶନଙ୍କ ଦାରୁ ଦର୍ଶନ କରିବାରେ ମହାପ୍ରଭୁଙ୍କ କୃପାବାରି କେମିତି ଆପଣଙ୍କ ଉପରେ ଝରି ପଡ଼ିଛି । ପୁଣି କେନ୍ଦୁଝର ଗଡ଼ ସିଦ୍ଧ ଜଗନ୍ନାଥ ମନ୍ଦିର ସମ୍ମୁଖରେ ପକ୍ଷୀରାଜ ଗରୁଡ଼ଙ୍କ ପରିବର୍ତ୍ତେ ଭକ୍ତରାଜ ହନୁମାନଙ୍କ ମୂର୍ତ୍ତି ଦେଖି ଆପଣଙ୍କ ମନର ଜିଜ୍ଞାସା କେମିତି ମେଣ୍ଟିଛି "ବିସ୍ମୟ ଠାକୁର ସିଦ୍ଧ ଜଗନ୍ନାଥ"ରେ । ଆପଣ ଯେ ମହାପ୍ରଭୁଙ୍କର ଅତି ଆପଣାର ଲୋକ ଏଥିରେ ସନ୍ଦେହର ଅବକାଶ ନାହିଁ । ଶେଷରେ ଆପଣଙ୍କ କବିତ୍ୱ ଓ ଜୀବନ ଉପରେ ଆପଣଙ୍କ "ଶ୍ରୀକ୍ଷେତ୍ରପାରା" ତା'ର ଦୁଇ ଅଭୟପର ବିସ୍ତାରି ଛାୟା ପ୍ରଦାନ କରୁଥାଉ- ଏତିକି ଶ୍ରୀକ୍ଷେତ୍ରାଧିପତିଙ୍କ ପାଦରେ ପ୍ରାର୍ଥନା ।

(ସାହିତ୍ୟ ସେବକ କବିପ୍ରାଣ ଶ୍ରୀଯୁକ୍ତ ଚିନ୍ତାମଣି ମହାଳିକଙ୍କ ସମ୍ବର୍ଦ୍ଧନା ଉତ୍ସବ ଉଦ୍ଦେଶ୍ୟରେ ଲିଖିତ)



# ରବି ବାବୁ ଆଉ ଆସିବେ ନାହିଁ

ଦୁଇ ହଜାର ଏକୋଇଶି ମସିହା ମେ ମାସ ୨୨ ତାରିଖ। ହୃଦୟରୁ ଗୋଟିଏ କ୍ଷତର ଦଗଢ଼ କମିନାହିଁ। ରବିଦାଦା (ବିଳ୍ପବୀ ରବିଦାଶ)ଙ୍କ ଅବର୍ତ୍ତମାନକୁ ମନ ଗ୍ରହଣ କରିପାରି ନାହିଁ। ପୁଣି ଏକ ଦାରୁଣ ଦୁଃସମ୍ବାଦ ମିଳିଲା, ରବିବାବୁଙ୍କର ଅକାଳ ବିୟୋଗ। ଖବରଟି ଦେଲେ ବିକ୍ରମ ବାବୁ (ଶ୍ରୀଯୁକ୍ତ ବିକ୍ରମ ପ୍ରଧାନ)। ଗାଧୋଇସାରି ଘରେ ରଖିଥିବା ଫଟୋ କୋଟୋଟି (ଗୁରୁଦେବ ଓ ଶ୍ରୀ ଜଗନ୍ନାଥ ଇତ୍ୟାଦି) ରେ ଫୁଲ ଲଗାଇ ସାରିଛି, ଠିକ୍ ସେହି ସମୟରେ ବିକ୍ରମ ବାବୁ ଟେଲିଫୋନ୍ କଲେ "ମାଡାମ୍, ଆପଣ କେଉଁ ଅବସ୍ଥାରେ ଅଛନ୍ତି ଜାଣିନାହିଁ, ତଥାପି ଖବରଟା ଦେଉଛି, ରବିବାବୁ ଚାଲିଗଲେ।" ସ୍ତବ୍ଧ ହୋଇ ବସିପଡ଼ିଲି। ମୁଣ୍ଡ ଉପରେ ବଜ୍ରପାତ ହେଲା ଭଳି ଅନୁଭବ ହେଲା। ପାଟିରୁ ଅଚାନକ ବାହାରି ପଡ଼ିଲା 'ପ୍ରଭୋ, ତାଙ୍କର ଆରୋଗ୍ୟ ପାଇଁ ତୁମକୁ ପ୍ରାର୍ଥନା କରୁଥିଲି, ଏବେ ତାଙ୍କର ସଦ୍‌ଗତି ପାଇଁ ପ୍ରାର୍ଥନା। କିଛି ସ୍ତବ ସ୍ତୁତି ପଢ଼ିପାରିଲି ନାହିଁ। ଅଖଣ୍ଡ ନିରବତାରେ ପ୍ରାୟ ଦେଢ଼ଘଣ୍ଟା କଟିଗଲା। ତାପରେ ଧୀରେ ଧୀରେ ପ୍ରକୃତିସ୍ଥ ହେଲି।

ରବିବାବୁ, ଶ୍ରୀଯୁକ୍ତ ରବୀନ୍ଦ୍ର ନାଥ ସାହୁ, କଳ୍ପନା ଛକରେ ଥିବା ହୋଟେଲ 'ଭାଗବତ ନିବାସ'ରେ କାମ କରନ୍ତି। ଡେଙ୍ଗା, ବଳିଷ୍ଠ, ସୁଠାମ ଚେହେରା, ହସ ହସ ମୁହଁ। ଦେଖିଲେ କେହି କହିବ ନାହିଁ ଯେ ବୟସ ଆସି ଅଣଷଠି, ଷାଠିଏ ଛୁଇଁଲାଣି। ତାଙ୍କ ସହିତ ମୋର ପରିଚୟ ଯୋଗ କ୍ଲାସରୁ। ଆମ ଘରକୁ ଲାଗିକରି ଥିବା ଦୁର୍ଗା ମଣ୍ଡପରେ ପ୍ରତିଦିନ ଯୋଗ ଅଭ୍ୟାସ କରିବାକୁ ଆସନ୍ତି ରବିବାବୁ। ଆଗରୁ ପାଞ୍ଚ ଛଅ ଜଣ ଯୋଗାଭ୍ୟାସୀ ଆସୁଥିଲେ। ଧୀରେ ଧୀରେ ସଂଖ୍ୟା କମିଗଲା। କେବଳ ରବିବାବୁ, ବିକ୍ରମ ବାବୁ (ଶ୍ରୀଯୁକ୍ତ ବିକ୍ରମ ପ୍ରଧାନ) ଓ ଶ୍ରୀଯୁକ୍ତ ହରମୋହନ ମିଶ୍ର ନିୟମିତ ଆସନ୍ତି। ପ୍ରଥମେ ଆସନ୍ତି ରବିବାବୁ। ଗେଟ ଖୋଲି ଦୁର୍ଗା ମଣ୍ଡପ, ଶିବ ମନ୍ଦିର ସମ୍ମୁଖ ଓ ରାସ୍ତାଘାଟ ଓଳାଇ ସଫା କରନ୍ତି। ଗାଲିଚା ବିଛାଇ ଅପେକ୍ଷା କରନ୍ତି ବିକ୍ରମ ବାବୁଙ୍କୁ। ଏହାଥିଲା ରବିବାବୁଙ୍କର ନିତି ଦିନିଆ କାର୍ଯ୍ୟ ନିର୍ଘଣ୍ଟ।

ବିକ୍ରମ ବାବୁ ମଧ୍ୟ ସେହି 'ଭାଗବତ ନିବାସ' ହୋଟେଲରେ ପରିଚାଳକ ଅଛନ୍ତି। ଦୁହେଁ ଏକାଠି ୩୦/୩୫ ବର୍ଷ ଧରି କାମ କରି ଆସିଛନ୍ତି। ରବିବାବୁ ଗେଟ୍ ଖୋଲି ଭିତରକୁ ଆସିଲେ ମୁଁ ତାଙ୍କ ପାଖକୁ ଯାଏ। ବେଳେବେଳେ ତାଙ୍କ ସହିତ ମିଶି ଯୋଗାଭ୍ୟାସ କରେ। ଆଉ କେତେବେଳେ ଦେହ ଖରାପ ଥିଲେ ତାଙ୍କୁ ଦେଖା କରିସାରି ଘରକୁ ଫେରିଆସେ। ସେଇ ସ୍ୱଳ୍ପ ସମୟ ଦେଖା ଚାହାଁ ଭିତରେ ସମ୍ପର୍କ ଏମିତି ଗଢ଼ି ଉଠିଲା ଯେ ମୋ ହୃଦୟ ଭିତରେ ରବିବାବୁ ଏକ ସ୍ୱତନ୍ତ୍ର ସ୍ଥାନ ଅଧିକାର କରି ବସିଲେ। ତାଙ୍କର ସବୁ ସୁଖ ଦୁଃଖ ଅଭାବ ଅସୁବିଧା ମୋତେ କହି ଦିଅନ୍ତି। କହନ୍ତି "ଆପଣଙ୍କ ଆଗରେ ସବୁ କଥା ପ୍ରକାଶ କରିଦେଲେ ମନ ହାଲୁକା ହୋଇଯାଏ।" କ୍ରମେ ତାଙ୍କ ପରିବାର ସହ ସମ୍ପର୍କ ହେଲା। ସେ ରହୁଥିବା ଭଡ଼ା ଘରକୁ ମୋତେ ଡାକିନେଲେ। ତାଙ୍କ ସ୍ତ୍ରୀ, ପୁଅ, ଝିଅ ଅତି ଆପଣାର ଲୋକ ଭଳି ବ୍ୟବହାର କଲେ। ବାନ୍ଧି ହୋଇଗଲି ତାଙ୍କ ସ୍ନେହ ମମତାରେ। ଆତ୍ମୀୟତା ବଢ଼ିଲା। ରବିବାବୁଙ୍କୁ କେବଳ ଜଣେ ପରିଚିତ ଲୋକ ବୋଲି ଲାଗିଲା ନାହିଁ, ଭାବିଲି ନିଜର ଜଣେ ଆତ୍ମୀୟ ଭଳି। ସମୟକ୍ରମେ ସେ ମଧ୍ୟ ଘର ବଦଳାଇ ଆମ ଘରକୁ ନିକଟ ରତ୍ନାକର ବାଗ ଏରିଆରେ ଘର ଭଡ଼ାନେଲେ। ଯିବା ଆସିବା ବଢ଼ିଲା। ସମ୍ପର୍କ ଦୃଢ଼ରୁ ଦୃଢ଼ତର ହେଲା। ରବିବାବୁଙ୍କ ସହିତ ସମ୍ପର୍କରେ ଆଉ ଦୂରତା ରହିଲା ନାହିଁ। ପ୍ରତି କଥାରେ ସେ ମୋତେ ସାହାଯ୍ୟ କଲେ। ଦୋକାନରୁ ଦିଆସିଲିଟିଏ ଆଣିଦେବା ଠାରୁ ଆରମ୍ଭ କରି ଡାକ୍ତରଖାନାକୁ ସାଙ୍ଗରେ ଯିବା ପର୍ଯ୍ୟନ୍ତ ସବୁ ପ୍ରକାର ସାହାଯ୍ୟ ସେ ମୋତେ ଦେଇଛନ୍ତି। ମୋ ଦୈନନ୍ଦିନ ଜୀବନରେ ପ୍ରତ୍ୟେକ ପଦାର୍ଥରେ ରବିବାବୁଙ୍କ ହାତର ସ୍ପର୍ଶ ରହିଛି। ଘର ଝରକାରେ ମଶାପାଇଁ ମଶାରୀ ଜାଲି ରବିବାବୁ ଲଗାଇ ଦେଇଛନ୍ତି। ପୂଜା କରିବା ପାଇଁ ପୂଜାସନ ଟିଏ ରବିବାବୁ ଆଣି ଦେଇଛନ୍ତି। ବ୍ଲାଉଜଟିଏ ସିଲେଇ କରିବାକୁ ଅସ୍ତ କନା ଦରକାର ହେଲେ ରବିବାବୁ ଆଣି ଦିଅନ୍ତି। କେତେବେଳେ ଔଷଧ ତ କେତେବେଳେ ଝାଡୁ, କେତେବେଳେ ଫଳ ତ କେତେବେଳ ପରିବା, କେତେବେଳେ ପୁଣି ଛତୁ ଅବା ମାଛ ଯାହା ଯେତେବେଳେ ଦରକାର ହୋଇଛି ସବୁ ସେ ଆଗ୍ରହରେ ଯୋଗାଇ ଦେଇଛନ୍ତି। ବ୍ୟାଙ୍କ କାମ, ଇଲେକ୍ଟ୍ରିବିଲ୍ ଦାଖଲ କରିବା ଇତ୍ୟାଦି ସବୁ କାମରେ ମୁଁ ତାଙ୍କର ସାହାଯ୍ୟ ଲୋଡୁଥିଲି। ଟେଲିଫୋନ କଲାମାତ୍ରେ କହିବେ "କ'ଣ ଦରକାର କୁହନ୍ତୁ, ମୁଁ ନେଇ ଯାଇଥିବି ପରେ ପଇସା ଦେବେ"। ଦିନେ ଘରର ଭଙ୍ଗାରୁଜା ମରାମତି ପାଇଁ କିଛି ବାଲି ଦରକାର ହେଲା। ମୁଁ ଦୁର୍ଗା ମନ୍ଦିର ଗେଟ୍ ପାଖରେ ଜଣଙ୍କୁ ପଚାରୁଥିଲି ଟ୍ରଲି ଓ ଖୁଚୁରା ବାଲି କେଉଁଠି ମିଳିବ

ବୋଲି, ରବିବାବୁ ପହଞ୍ଚିଗଲେ। ବାଲି ଦରକାର ଅଛି କହିବାରୁ କହିଲେ "ଆପଣ ବ୍ୟସ୍ତ ହୁଅନ୍ତୁ ନାହିଁ, ମୁଁ ଟ୍ରଲି ବୁଝି ବାଲି ଘରେ ପହଞ୍ଚାଇ ଦେବି।" ଠିକ୍ ତା' ପରଦିନ ଟ୍ରଲିରେ ବାଲି ପହଞ୍ଚିଲା ଓ କାମ ଆରମ୍ଭ ହେଲା। ପ୍ରଥମାଷ୍ଟମୀ, ରଜପର୍ବ ଆସିଲେ ମୋ ଝିଅ କହିବ "ଅପା (ରବିବାବୁଙ୍କ ସ୍ତ୍ରୀ) ନିଶ୍ଚୟ ପିଠା ପଠାଇବେ"। ସତକୁ ସତ ରବିବାବୁ ପିଠା ତରକାରି ଆଣି ଘରେ ଛାଡ଼ିଦେଇ ହୋଟେଲକୁ duty ରେ ଚାଲିଯାନ୍ତି ପୁଣି ଫେରିଲାବେଳେ ତାଙ୍କ ଟିଫିନ୍ କ୍ୟାରିଅର ଫେରାଇ ନିଅନ୍ତି। ରାତି ପାହିଲେ ଆଖି ଆପେ ଆପେ ଚାଲିଯାଏ ଦୁର୍ଗା ମନ୍ଦିର ଗେଟ୍ ପାଖକୁ। ରବିବାବୁ ଆସିଲେଣିକି ନାହିଁ, ମଣ୍ଡପ ଓଳାଓଳି କାମ ସାରିଲେଣି କି ନାହିଁ। ତାଙ୍କୁ ଦେଖି ପାଖକୁ ଗଲେ ହସହସ ମୁହଁରେ ନମସ୍କାର କରିବେ। ଦେହ ଭଲ ଅଛି ତ, ଆପଣ ଯୋଗ କ୍ଲାସକୁ ଆସିବେକି ନାହିଁ ବୋଲି ପଚାରିବେ। ଏଇ ନିକଟରେ ତାଙ୍କୁ ଝାଡୁ ମାରୁଥିବାର ଦେଖି ପାଖକୁ ଗଲି। ଗାଢ଼ ଗୋଲାପୀ ରଙ୍ଗର ସାର୍ଟ ପିନ୍ଧିଥିଲେ। ତାଙ୍କୁ ଭଲ ମାନୁଥିଲା। କହିଲି ସାର୍ଟଟା ଆପଣଙ୍କୁ ଭଲ ଦେଖାଯାଉଛି। ସ୍ୱଭାବ ସୁଲଭ ଢଙ୍ଗରେ ହସି ଦେଇ କହିଲେ, "ଝିଅ କିଣି ଦେଇଥିଲା।" ସେଇ ଥିଲା ତାଙ୍କ ସହ ଶେଷ ଦେଖା। ହୋଟେଲରେ duty ରେ ଥାନ୍ତି, ଗୋଟିଏ ରୁମ୍ ସ୍ପ୍ରେ ଆଣିବାକୁ ଟେଲିଫୋନ୍‌ରେ କହିଥିଲି। କହିଲେ "ମୁଁ ଘରକୁ ଗଲାବେଳେ ହୋଟେଲ ସାମନାରେ ଥିବା ଦୋକାନରୁ କିଣି ନେଇଯିବି।" ସ୍ପ୍ରେ ଆଣିଲେ। ଗାଗୁ (ମୋ ଝିଅର ସାନପୁଅ) ହାତରେ ପଠାଇ ଦେଲେ। ମୋ ସାଙ୍ଗରେ ଦେଖାକରି ନାହାନ୍ତି। ମୁଁ ଅପେକ୍ଷା କରିଛି ରବିବାର କି ସୋମବାର ଦିନ ସେ ଯୋଗ କ୍ଲାସକୁ ଆସିଲେ ଦାମ୍ ପଚାରିବି, ପଇସା ଦେବି। ମାତ୍ର ସେ ଆସିଲେ ନାହିଁ କି ଟେଲିଫୋନ୍ ମଧ୍ୟ ଧରିଲେ ନାହିଁ। ଖବର ପାଇଲି ନିମୁନିଆରେ ଆକ୍ରାନ୍ତ ହୋଇ ସେ କଟକ ବଡ଼ ମେଡିକାଲରେ ଭର୍ତ୍ତି ହୋଇଛନ୍ତି। କ'ଣ ହେଲା କେଜାଣି ସେ ବିଛଣାରୁ ଉଠି ପାରିଲେ ନାହିଁ କି ଚାଲିପାରିଲେ ନାହିଁ। ଏକେ ତ କରୋନା ସମୟ, ଡାକ୍ତରଖାନାମାନଙ୍କରେ ଅନ୍ୟରୋଗୀ ମାନଙ୍କ ପ୍ରତି ଚିକିତ୍ସାର ଅବହେଳା। ତେଣୁ ମେଡ଼ିକାଲରୁ ତାଙ୍କୁ ଡିସ୍‌ଚାର୍ଜ କରିଦେଲେ। ଅସହାୟ ଅବସ୍ଥାରେ ତାଙ୍କ ସ୍ତ୍ରୀ ତାଙ୍କୁ ଗାଁକୁ ନେଇଗଲେ। ଗାଁରୁ ସେ ଆଉ ଫେରିଲେ ନାହିଁ। ଗାଁ ମାଟି ମା'ର କୋଳରେ ସବୁଦିନ ପାଇଁ ଶୋଇଗଲେ। ତାଙ୍କ ଝିଅର ବାହାଘର ଏଇ ଗଲା ଫେବୃୟାରୀରେ ହୋଇଥିଲା। ମୋ ପାଇଁ ବେଭାର ଶାଢ଼ି ଆଣି ଘରକୁ ଆସିଥିଲେ। ଗଲାବେଳେ କହିଲେ "ପୁଅ ବାହାଘର ଆର ବର୍ଷକୁ କରିଦେବା"। ଆଶା ଆଶାରେ ହିଁ ରହିଗଲା। ମଣିଷର ସବୁଆଶା କ'ଣ ପୂରଣ ହୋଇଥାଏ ? କବିବର ପରା କହିଛନ୍ତି

"ବଡ଼ କ୍ରୂରକାଳ, ବଡ଼ ଅବିଶ୍ୱାସୀ, ହାବୁଡ଼ି ଯିବ ସେ ଅଚାନକ ଆସି"। ସତରେ ସବୁ ଯେମିତି ଅଚାନକ ଘଟିଗଲା।

ରବିବାବୁ ଥିଲେ ଅତ୍ୟନ୍ତ ସ୍ୱାଭିମାନୀ, ସରଳ, ନିରହଙ୍କାର ଓ ପରୋପକାରୀ। ତାଙ୍କର ଅକାଳ ବିୟୋଗ କଥା ଶୁଣି ସବୁରି ଆଖିରେ ଲୁହ ଓ ହୃଦୟରେ କୋହ। ସେଦିନ ବିକ୍ରମ ବାବୁ (ତାଙ୍କ ହୋଟେଲ ମ୍ୟାନେଜର) ମୋତେ କହିଲେ "ମାଡାମ, ଯାହାକୁ ମୁଁ ଏ ସମ୍ବାଦ ଦେଉଛି ସମସ୍ତେ କହୁଛନ୍ତି "ଆହା ଭଲଲୋକଟା ଚାଲିଗଲା"। ଭାଗବତର ମହାକାବ୍ୟ ମନକୁ ଆସୁଛି-

"ପ୍ରାଣୀର ଭଲମନ୍ଦ ବାଣୀ, ମରଣ କାଳେ ତାହା ଜାଣି"।

ମୋ ସହିତ ତାଙ୍କ ସମ୍ପର୍କ ଭାଇ ଭଉଣୀର, କି ମା', ପୁଅର କି ସାଙ୍ଗସାଥୀ ବା ବନ୍ଧୁ ବାନ୍ଧବୀର ନଥିଲା। ମୋତେ ମାଡାମ ବୋଲି ଡାକୁଥିଲେ, ସମ୍ମାନ ଦେଉଥିଲେ। ମାତ୍ର ସମ୍ପର୍କର ଗଣ୍ଠି ଏତେ ଦୃଢ଼ ଥିଲା ବୋଲି ତାଙ୍କର ଅବର୍ତ୍ତମାନରେ ମୁଁ ଅନୁଭବ କରୁଛି। ଆଖି ଖୋଲିଲେ, ଆଖି ବୁଜିଲେ ରବିବାବୁ ଆଖି ଆଗରେ ଦିଶୁଛନ୍ତି। ମନକୁ ଯେତେ ବୁଝାଇଲେ ବି ପରତେ ଯାଉନି ଯେ ରବିବାବୁ ଆଉ ଆସିବେ ନାହିଁ। ଏତେ ମାନସିକ କଷ୍ଟ ଯନ୍ତ୍ରଣା ଅନ୍ୟ କୌଣସି ପ୍ରିୟଜନର ବିଚ୍ଛେଦ୍‌ରେ ଭୋଗିଲା ଭଳି ମୋର ମନେ ହେଉନାହିଁ। ଜନ୍ମାନ୍ତର ଯଦି ସତ୍ୟ, ତାହେଲେ ମୋର ବିଶ୍ୱାସ ଏ ସମ୍ପର୍କ ନିଶ୍ଚୟ କୌଣସି ଏକ ପୂର୍ବଜନ୍ମର ଅନୁବନ୍ଧନ। ତାଙ୍କ ଆତ୍ମାର ସଦ୍‌ଗତି ପାଇଁ ମନୁଭାଇନା ଦୁର୍ଗା ମନ୍ଦିରରେ ଗୀତା ପାଠ କରୁଛନ୍ତି। ପ୍ରଭୁଙ୍କ ପାଦପଦ୍ମରେ ପ୍ରାର୍ଥନା କରୁଛି ତାଙ୍କ ଆତ୍ମାର ସଦ୍‌ଗତି ପାଇଁ ଏବଂ ତାଙ୍କ ଅବର୍ତ୍ତମାନକୁ ସହ୍ୟ କରିବାର ଶକ୍ତି ମୋତେ ଦେବାପାଇଁ।

କି ବନ୍ଧନେ ବାନ୍ଧିଥିଲ ଚାଲିଗଲ ଲୁଚି
ଖୋଜୁଛି ଦୁର୍ଗା ମଣ୍ଡପ ଖୋଜୁଛି ମୋ ଆଖି।

ଏକାଦଶାହରେ ଲିଖିତ।



# ସୁଭାଷ ନୁହେଁ ସୁବାସ

ଚାରିଟା ବେଳଠୁଁ ଟେଲିଫୋନ୍ ଲଗାଉଛି ଯେ ଲାଗୁନାହିଁ। ଖାଲି ଅପହଞ୍ଚ ଦୂରତାରେ ଅଛି ବୋଲି କହୁଛି। କଥା କ'ଣ ? ଆମ ଘରଠୁଁ ଖଣ୍ଡଗିରିକୁ ସ୍କୁଟିରେ ଗଲେ କ'ଣ ଏକ ଘଣ୍ଟାରୁ ଅଧିକ ସମୟ ଲାଗିବ ? ଏଇମିତି ନାନା କଥାରେ ମନଟା ଘାଣ୍ଟି ଗୋଳେଇ ହେଉଥାଏ। କେବଳ ତାଙ୍କୁ ପଦେ କଥା କହିବାର ଅଛି- 'ସୁଭାଷ' ନୁହେଁ 'ସୁବାସ'। ତାଙ୍କ ନାଁ ସୁବାସ ଚନ୍ଦ୍ର ପଟ୍ଟନାୟକ। ମାତ୍ର ମୁଁ ଲେଖିଛି ସୁଭାଷ। କ'ଣ ଭାବିଥିବେ ମନରେ, ଅପା ବୋଲି ଡାକୁଛନ୍ତି ଅଥଚ ନାଁ ଟା ଠିକ୍ ଭାବରେ ମନେ ରଖିପାରିଲି ନାହିଁ। ତାଙ୍କର ପ୍ରଥମ ପ୍ରକାଶିତ ବହିଟି 'ଅଭୀପ୍‌ସା ଓ ଅନୁଭବର କାହାଣୀ' ମୋତେ ଦେବାପାଇଁ ଘରକୁ ଆସିଥିଲେ। ପୂଜ୍ୟ ଗୁରୁଦେବଙ୍କ ସମ୍ପର୍କରେ ପ୍ରକାଶିତ "ଅନନ୍ୟ ଗୁରୁ ଶ୍ରୀ ଜୟଦେବ ବ୍ରହ୍ମଚାରୀ" ବହି ଖଣ୍ଡିକ ମୁଁ ତାଙ୍କୁ ପ୍ରଦାନ କଲାବେଳେ ନାଁ କୁ ସୁବାସ ବଦଳରେ ସୁଭାଷ ଲେଖି ବହିଟି ତାଙ୍କୁ ଦେଇଦେଲି। ତାଙ୍କ ସହ ଯୋଗାଯୋଗ ହୋଇପାରିଲା ନାହିଁ। ଭାବି ଭାବି ସନ୍ଧ୍ୟା ହେଲା। ସନ୍ଧ୍ୟା ପ୍ରାର୍ଥନା ସାରି ଚିନ୍ତାକଲି, ଯଦି ବି ମୁଁ ସୁଭାଷ ଲେଖି ଦେଇଛି ବହିରେ, ଅସୁବିଧା କ'ଣ ? ତାଙ୍କ ପ୍ରଦତ୍ତ ବହିଟିର କିଛି ଅଂଶ ପଢ଼ିଲି। ପ୍ରଫେସର ଡାକ୍ତର ଅକ୍ଷୟ ମିଶ୍ରଙ୍କ ଅଭିମତ ପଢ଼ିଲି। ଅକ୍ଷୟ ସାର୍ ଯାହା କହିଛନ୍ତି ନିଛକ ସତକଥା। ବହିଟିକୁ ପାଠକ ପଢ଼ିସାରି ଆଲମାରୀରେ ରଖିଦେଇ ପାରିବ ନାହିଁ।

ନିତିଦିନିଆ ଜୀବନରେ ବହିଟି ଜଣେ ସହାୟକ ବନ୍ଧୁପରି। ପ୍ରତି ପରିଚ୍ଛେଦର ଶିରୋନାମାରୁ ହିଁ ପାଠକ ଭିତରର କଥା ଜାଣିବାକୁ ଅଦ୍ଭୁତ ଆକର୍ଷଣ ଅନୁଭବ କରିବ। କାହାଣୀଗୁଡ଼ିକ ଲେଖକଙ୍କ ଅନୁଭବର କଥାହିଁ କହୁଛନ୍ତି। ଚରିତ୍ର ଗୁଡ଼ିକ ନିଜ ଚଳନ୍ତି ସଂସାର ଭିତରୁ ହିଁ ଆସିଛନ୍ତି। ଅକ୍ଷୟ ସାର୍‌ଙ୍କ ଭାଷାରେ କହିଲେ ଏହା ଆବାଳ ବୃଦ୍ଧଙ୍କ ପାଇଁ ଏକ ମନୋଜ୍ଞ ଉପକଥା। ବାସ୍ତବିକ ଲେଖା ଗୁଡ଼ିକର ମହକ ସୁଦୂର ପ୍ରସାରୀ। ତେଣୁ ଲେଖକଙ୍କ ସୁବାସ ନାମ ହିଁ ଯଥାର୍ଥ।

ଏବେ ମୁଁ 'ସୁଭାଷ' କଥା କହିବି। ତାଙ୍କର ସ୍ୱର ଅତି ମଧୁର। ବୟସ ଦୃଷ୍ଟିରୁ ଶରୀରକୁ ଜରା ସ୍ପର୍ଶ କରିଥିଲେ ମଧ୍ୟ କଣ୍ଠକୁ କବଳିତ କରିପାରିନାହିଁ। କଥାବାର୍ତ୍ତାରେ ତାଙ୍କର ମାଧୁର୍ଯ୍ୟ ପୂରି ରହିଛି। ଅନ୍ତର ଶୁଦ୍ଧ, ନିର୍ମଳ, ଛଳନାହୀନ। ତାଙ୍କ କଥା ବା ଭାଷା ସର୍ବଦା 'ସୁ' ଯୁକ୍ତ। ତେଣୁ ସେ 'ସୁଭାଷ'। ସୁବାସକୁ ସୁଭାଷ ଲେଖି ଯେ କିଛି ଭୁଲ କରିନାହିଁ, ଏହା ମୋର ହୃଦ୍‌ବୋଧ ହେଲା। ତେଣୁ ଅଂପା ର ଏ ଭ୍ରମ ସଂଶୋଧନକୁ ସୁବାସ ଠିକ୍ ଭାବରେ ଗ୍ରହଣ କରିବେ ବୋଲି ଆଶା।



# କ୍ଷମା, ଧୈର୍ଯ୍ୟ ଓ ଅପେକ୍ଷା

୨୦୨୧ ମସିହାର ଶ୍ରାବଣ ପୂର୍ଣ୍ଣିମା। ଶ୍ରୀଗୁରୁଦେବଙ୍କର ପୁଣ୍ୟ ଜନ୍ମଦିନ। 'କରୋନା' ମହାମାରୀ ଯୋଗୁଁ ଦୁଇ ବର୍ଷ ହେଲାଣି ଆଶ୍ରମରେ ଜନ୍ମ ଦିବସ ପାଳନରେ କଟକଣା। ଆଶ୍ରମ ଶୂନ୍‌ଶାନ। ଭକ୍ତ ଶିଷ୍ୟ କେହି ନାହାନ୍ତି। ଗେଟ୍ ଖୋଲା ହେଉ ନାହିଁ। ଆଶ୍ରମ ପରିଚାଳକ ଅଶୋକ ଦାଦାଙ୍କୁ ଟେଲିଫୋନ୍ କଲି। ଗୁରୁଦେବଙ୍କୁ ଦର୍ଶନ କରି ପ୍ରଣାମ କରି ହେବକି ବୋଲି ପଚାରିଲି। ଉତ୍ତର ମିଳିଲା "ଆସନ୍ତୁ, ବାବା ଅପେକ୍ଷା କରିଛନ୍ତି। ଏଗାରଟା ସାଢ଼େ ଏଗାରଟା ଭିତରେ ଆସନ୍ତୁ।" ନିର୍ଦ୍ଧାରିତ ସମୟ ଭିତରେ ଆଶ୍ରମରେ ପହଞ୍ଚିଲି। ପରିବେଶ ଶ୍ରୀହୀନ ଲାଗିଲା। ଗୁରୁଦେବ ତାଙ୍କର ନିତିଦିନିଆ ଚୌକିରେ ବସିଥାନ୍ତି। ଗଳାରେ ଫୁଲ ହାର ନାହିଁ। ଅଙ୍ଗରେ ନବବସ୍ତ୍ର ନାହିଁ। (ଅବଶ୍ୟ ଅମ୍ଳାନ ଧୋତି, ପଞ୍ଜାବୀ ପିନ୍ଧିଥିଲେ)। ପାଦରେ ପୁଷ୍ପାଞ୍ଜଳି ଅର୍ପଣ କରି ପ୍ରଣାମ କଲି। ସ୍ୱସ୍ତି ମନ୍ତ୍ର ପଢ଼ି ଆଶୀର୍ବାଦ କଲେ। ରାତି ତିନିଟାରୁ ଉଠି, ନିଜର ନିତ୍ୟକର୍ମ ସାରି ସେ ଅପେକ୍ଷା କରିଥିଲେ କାଳେ କେହି ଭକ୍ତ ଶିଷ୍ୟ ଆସି ଯିବେ ବୋଲି। ମାତ୍ର କାହାରିକୁ ତାଙ୍କ ପାଖକୁ ଯିବାର ଅନୁମତି ନଥିଲା 'କରୋନା' ଯୋଗୁ। ଜନ୍ମଦିନ ପାଇଁ ଦୁଇଟି କବିତା ଲେଖିଥିଲି। 'ଗୁରୁବନ୍ଦନା' ଓ 'ଗୁରୁ ଭଜ ନ କରି ହେଲା' ପଢ଼ିବା ପାଇଁ ତାଙ୍କ ହାତକୁ ବଢ଼ାଇ ଦେଲି। ଆଗ୍ରହରେ ପଢ଼ିଲେ ଓ ଭାଙ୍ଗିଭୁଙ୍ଗି ପକେଟରେ ରଖିଲେ। କହିଲେ, "ତମର ସବୁ କବିତା ମୁଁ ସାଇତି ରଖିଛି। ନିରୋଳାରେ ବସି ପଢ଼େ।" କୃତଜ୍ଞତାରେ ମୋ ମୁଣ୍ଡ ନଇଁଗଲା। କହିଲି, "ବାବା, ସବୁ ଆପଣଙ୍କ କୃପା"। କିଛି ସମୟ ଭଲମନ୍ଦ କଥା ପଚାରିଲେ। ତା'ପରେ କହିଲେ, "ମନେ ରଖିଥିବ ମଣିଷ ଜୀବନରେ ତିନୋଟି ଜିନିଷ ହେଉଛି ମୁଖ୍ୟ। କ୍ଷମା, ଧୈର୍ଯ୍ୟ ଓ ଅପେକ୍ଷା"।

ଫଳ ପ୍ରସାଦ ପାଇ, ବାବାଙ୍କଠାରୁ ବିଦାୟ ନେଇ ଘରକୁ ଆସିଲି। ଘରେ ଆସି ବହୁତ ଭାବିଲି। ବାବା କ୍ଷମା ଶବ୍ଦ କାହିଁକି କହିଲେ। କ୍ଷମା ଦାତା ତ ମୁଁ କେବେ ବି ହୋଇ ପାରିବି ନାହିଁ। ମୋ ଭଳି ଅକିଞ୍ଚନ, ଯିଏ ଅଗଣିତ ଅପରାଧରେ ଅପରାଧୀ

ସେ ପୁଣି କ୍ଷମା କାହାକୁ ଦେବ ? ବାବା କାହିଁକି କଥାକୁ ସ୍ପଷ୍ଟ କଲେ ନାହିଁ। ପରେ ମନକୁ ଆସିଲା ଯେ କ୍ଷମା ଦେବା ପାଇଁ ନୁହେଁ, କ୍ଷମା ପ୍ରାର୍ଥୀ ହେବା ପାଇଁ ବାବାଙ୍କର ନିର୍ଦ୍ଦେଶ। ବଡ଼ ସାନ ନିର୍ବିଶେଷରେ କ୍ଷମା ପ୍ରାର୍ଥନା କଲେ ଅନ୍ତରରୁ ଅହଙ୍କାର ଦୂର ହୋଇଯାଏ। ଏହାହିଁ ବୋଧହୁଏ ଗୁରୁଦେବଙ୍କର ମୋ ପ୍ରତି ସେଦିନ ଥିଲା ନିର୍ଦ୍ଦେଶ।

ଅପେକ୍ଷା:- ଲକ୍ଷ୍ୟ ହାସଲ ପାଇଁ ଅପେକ୍ଷା। ଆଗରୁ କେତେଥର ଗୁରୁଦେବ ବୁଝାଇ କହିଛନ୍ତି ଯେ ନିଜେ ପରଂବ୍ରହ୍ମ ରାମଚନ୍ଦ୍ରଙ୍କୁ ଲକ୍ଷ୍ୟ ହାସଲ କରିବା ପାଇଁ ୧୪ ବର୍ଷ ଅପେକ୍ଷା କରିବାକୁ ପଡ଼ିଥିଲା। ସତ୍ୟ ଧର୍ମରେ ସଦାଚାରୀ ପାଣ୍ଡବମାନେ ସ୍ୱୟଂ ଭଗବାନଙ୍କ କୃପାଛାୟା ତଳେ ଥାଇ ମଧ୍ୟ ୧୩ ବର୍ଷ କାଳ ଅପେକ୍ଷା କରିଥିଲେ। ତେଣୁ ସଫଳତା ନିଜ ଇଚ୍ଛାରେ ମିଳେ ନାହିଁ। ତାହା ଈଶ୍ୱରଙ୍କ ଇଚ୍ଛା ଓ କୃପାରେ ହିଁ ମିଳିଥାଏ।

ଧୈର୍ଯ୍ୟ:- ମୋ'ପରି କ୍ଷୁଦ୍ରମତି ଜୀବର ଧୈର୍ଯ୍ୟଘର ଏକାବେଳକେ ଶୂନ। ସାମାନ୍ୟ ସମସ୍ୟା କି ବିପଦ ଆସିଗଲେ ମୁଁ ସାଙ୍ଗେ ସାଙ୍ଗେ ଭାଙ୍ଗି ପଡ଼ିଥାଏ। ସେଥିପାଇଁ ବୋଧହୁଏ ଗୁରୁଦେବ ସେଦିନ ଜୀବନରେ ଧୈର୍ଯ୍ୟର ଆବଶ୍ୟକତା ସମ୍ପର୍କରେ ସୂଚନା ଦେଇଥିଲେ। ଥରେ ଧୈର୍ଯ୍ୟ ସମ୍ପର୍କରେ ବାବା ଗପଟିଏ କହିଥିଲେ। ଗପଟି ଭଗବାନ ବୁଦ୍ଧଦେବଙ୍କ ଜୀବନ ସମ୍ପର୍କରେ। ବହୁଦିନ ତପସ୍ୟା କରିବା ପରେ ଜ୍ଞାନ ପ୍ରାପ୍ତ ନହେବାରୁ ନୈରାଶ୍ୟରେ ଗୌତମ ସେଦିନ ତପସ୍ୟାରୁ ନିବୃତ୍ତ ହେବାକୁ ସିଦ୍ଧାନ୍ତ ନେଲେ। ସ୍ନାନ କରିବାକୁ ନଦୀ ତଟକୁ ଯାଆନ୍ତେ ସେଠାରେ ଏକ ଅଦ୍ଭୁତ ଦୃଶ୍ୟ ଦେଖିଲେ। ପକ୍ଷୀଟିଏ ତା'ର କ୍ଷୁଦ୍ର ଥଣ୍ଟରେ ନଦୀରୁ ପାଣି ବୋହି ଆଣି ବାଲୁକାଶଯ୍ୟା ଉପରେ ଢାଳୁଛି। କାରଣ ପଚାରି ବୁଝିଲେ ଯେ ନଦୀରେ ଜୁଆର ଆସି ତା'ର ଅଣ୍ଡା ଦୁଇଟିକୁ ନଦୀ ଗର୍ଭକୁ ଭସାଇ ନେଇଛି। ତେଣୁ ନଦୀ ଜଳକୁ ଶୁଖାଇ ଅଣ୍ଡା ଦୁଇଟିକୁ ଉଦ୍ଧାର କରିବା ପାଇଁ ପକ୍ଷୀଟିର ଏ ପ୍ରୟାସ। ନିରବରେ ଚିନ୍ତା କଲେ ଗୌତମ। କ୍ଷୁଦ୍ର ଜୀବଟିଏ ଯଦି ତା'ର ଲକ୍ଷ୍ୟ ସିଦ୍ଧି ପାଇଁ ଧୈର୍ଯ୍ୟ ହରାଉ ନାହିଁ କି ସଂକଳ୍ପରୁ ବିଚ୍ୟୁତ ହେଉନାହିଁ, ତା'ହେଲେ ସେ କାହିଁକି ତାଙ୍କ ସଂକଳ୍ପରୁ ହଟିଯିବେ। ନିଜର ତପସ୍ୟା ସ୍ଥଳକୁ ଫେରି ଆସିଲେ ଗୌତମ।

ପଢ଼ିଥିଲି ପରମପୁରୁଷ ଶ୍ରୀରାମକୃଷ୍ଣଙ୍କ ବାଣୀ। ଧୈର୍ଯ୍ୟ, ସାହସ, ଶକ୍ତି ଏସବୁ ପାଇବା ପାଇଁ ତାଙ୍କୁ (ଈଶ୍ୱରଙ୍କୁ) ପ୍ରାର୍ଥନା କରିବାକୁ ହୋଇଥାଏ। ତେଣୁ ବୁଝିଲି ପ୍ରାର୍ଥନା ହିଁ ବଳ ଓ ପ୍ରାର୍ଥନା ହିଁ ମାଧ୍ୟମ।

ଅନୁଗୋଳରୁ ଗୁରୁଭ୍ରାତା ଶ୍ରୀ ପ୍ରବୀର ଚନ୍ଦ୍ର ମିଶ୍ର ଟେଲିଫୋନ୍ କଲେ। ବାବାଙ୍କ ପାଖକୁ ଯାଇଥିଲେ କି ନାହିଁ, ବାବା କ'ଣ ସବୁ କହିଲେ ଇତ୍ୟାଦି ଇତ୍ୟାଦି ପଚାରିଲେ। ମୁଁ କହିଲି "ବାବା କହିଛନ୍ତି ଧୈର୍ଯ୍ୟ, କ୍ଷମା ଓ ଅପେକ୍ଷା ଏହି ତିନୋଟି ଜିନିଷ ପ୍ରତି ଧ୍ୟାନ ଦେବାକୁ।" ସେ କହିଲେ, "ତାହାହିଁ ଆମ ପାଇଁ ଅମୃତ ବାଣୀ। ଆପଣ ତା'ରି ଉପରେ କବିତାଟିଏ ଲେଖନ୍ତୁ।" ଧୈର୍ଯ୍ୟ, କ୍ଷମା, ଅପେକ୍ଷା ଉପରେ ତ ମୁଁ କବିତା ଲେଖି ପାରିଲି ନାହିଁ। କେବଳ ପ୍ରାର୍ଥନା କଲି -

"ଧୈର୍ଯ୍ୟ ଶକ୍ତି ଦିଅ ପ୍ରଭୋ ଦୟାମୟ ହରି
ଅପରାଧ କ୍ଷମି ନିଅ ଆପଣାର କରି"।



# ବାକି ରହିଗଲା ରାଖୀ

କେଉଁଠୁ ଆରମ୍ଭ କରିବି ତମ କଥା। ଭଦ୍ରକ କଲେଜ ଲେଡ଼ିଜ ହଷ୍ଟେଲରୁ ନା ତମ ଗାଁ 'ନାରୀ ଗାଁ ଉଆସ'ରୁ। ସ୍ମୃତି ପଟରେ ଭାସି ଉଠୁଛି ସେଦିନ, ଯେଉଁଦିନ ଭଦ୍ରକ କଲେଜ ହଷ୍ଟେଲରେ ମୋତେ ପ୍ରଥମ କରି ଦେଖିବାକୁ ଯାଇଥିଲ ଅନ୍ତର୍ଯ୍ୟାମୀ ସାଙ୍ଗରେ। ଅନ୍ତର୍ଯ୍ୟାମୀ ମୋତେ କହିଲା, "ମାମୁଁ ତତେ ଦେଖିବାକୁ ଆସିଛନ୍ତି।" ହଠାତ୍ କିଛି ବୁଝି ପାରି ନ ଥିଲି ମୁଁ। ପରେ ବୈକୁଣ୍ଠ ବିଶ୍ୱାଳ ରହସ୍ୟର ପରଦା ଖୋଲିଥିଲେ। ସେ (ବୈକୁଣ୍ଠ ବିଶ୍ୱାଳ) ଯାହାକୁ ବିବାହ କରିବେ ସେ ହେବ ତମର ଭଉଣୀ। (ଅନ୍ତର୍ଯ୍ୟାମୀ ମୋର ସ୍କୁଲବେଳର ପଢ଼ାସାଥୀ। ମୋତେ ଖୁଡ଼ୀ ଡାକେ। ସେହି ହିସାବରେ ମୋ ଭାଇ ତା'ର ମାମୁଁ।) ସେଇଠୁ ଆରମ୍ଭ ହେଲା ଆମର ବନ୍ଧନ। ତା'ପରେ ତମେ ମୋତେ ସାଙ୍ଗରେ ନେଇ ତମ ଗାଁ (ନାରୀ ଗାଁ)କୁ ଗଲ। ସେଦିନ ସାଇପଡ଼ିଶା ଗଦା ହୋଇ ଯାଇଥିଲେ ସୁରେଶର ଭଉଣୀ ଆସିଛି ଦେଖିବେ ବୋଲି। ବୋଉ (ତମ ବୋଉ) ଘରର ଅନ୍ୟମାନଙ୍କୁ ଡାକି କହିଥିଲା, "ଦେଖିବ ଆସ ମୋର ଏଠି ଗୋଟିଏ ଝିଅ ଜନ୍ମ ହେଲାଣି।" ସେହିଦିନ ଠାରୁ ତମ ଘର, ତମ ଗାଁ ଓ ତମ ବନ୍ଧୁବାନ୍ଧବ ସମସ୍ତଙ୍କ ସାଙ୍ଗରେ ମୁଁ ଯୋଡ଼ି ହୋଇଗଲି ପରିବାରର ଜଣେ ହୋଇ। ଏକାବେଳେ ସବୁ କଥା ଆଖି ଆଗରେ ଉଭା ହୋଇ ଯାଉଛି। କୋଉଟାକୁ ପ୍ରଥମେ ଶୁଣାଇବି ତମକୁ। ବନ୍ଧୁ ଦୀନେଶ ଭଟ୍ଟାଚାର୍ଯ୍ୟଙ୍କ 'ଆହାରପଦା' ଗାଁ ଘର। ଦୁର୍ଗାପୂଜା ଦେଖିବାକୁ ଆମେ ତିନି ଜଣ ଯାଇଥିଲେ। ୰ବୈକୁଣ୍ଠ ବିଶ୍ୱାଳ, ତମେ ଆଉ ମୁଁ। ତମର କ'ଣ ହେଲା କେଜାଣି ଅନେକଗୁଡ଼ିଏ ନିଦ ବଟିକା ଏକାବେଳକେ ଖାଇଦେଲ। ଜୀବନ ବିପନ୍ନ ହେଲା। ଦୁର୍ଗାପୂଜା ଦେଖିବି କ'ଣ ସାରାରାତି ବିକଳରେ ମା' ଦୁର୍ଗାଙ୍କୁ ତମର ଜୀବନ ଭିକ୍ଷା ମାଗିଥିଲି। ମା' ଡାକ ଶୁଣିଲେ। ତମେ ଆଖି ଖୋଲିଲ ଓ ଧୀରେ ଧୀରେ ସ୍ୱାଭାବିକ ଅବସ୍ଥାକୁ ଆସିଲ। ତମ ସ୍ୱାଭିମାନ ଉପରେ ବାଧା ଆସିଥିଲା ସେଦିନ। କାରଣ ସେ ଛୋଟ ଦଳରେ ତମେ ମୁଖ୍ୟ ନ ଥିଲ। ତମ ପ୍ରଚଣ୍ଡ ସ୍ୱାଭିମାନକୁ ସମ୍ମାନ ଜଣାଇ ନିରବ ରହିଥିଲି। କଲେଜ ଛୁଟି ହେଲେ ଆମେ ପ୍ରଥମେ ନାରୀ ଗାଁ

ଯାଉଥିଲେ, ତା'ପରେ ତରଡ଼ିପାଳ (ଆମ ଗାଁ) ଆସୁଥିଲେ। ତରଡ଼ିପାଳରେ ବୋଉ (ମୋ ବୋଉ) ଆଶ୍ୱସ୍ତ ହୋଇଥିଲା ତମ ଉପରେ ମୋର ଦାୟିତ୍ୱ ଅର୍ପଣ କରି। ଯୋଉଦିନ ମୋତେ ସାଙ୍ଗରେ ନେଇ ସମ୍ବଲପୁରକୁ ଯାଇଥିଲ, ମୋର B.Ed. ଆଡମିସନ ପାଇଁ। ସେଦିନ ମୋ ବୋଉ ତମକୁ କହିଥିଲା, "ତା' କଥା (ମୋ କଥା) ତୁ ବୁଝିବୁ ବାପା।" ପ୍ରକୃତରେ ତମେ ତାହାହିଁ କରିଥିଲ।

ମନେପଡୁଛି ବାପୁଜୀନଗରର ୬୭ ନମ୍ବର ଘର। ତମେ ସେତେବେଳେ ଅଲ୍ ଇଣ୍ଡିଆ ରେଡ଼ିଓରେ ଚାକିରି ପାଇ ନଥିଲ। ବାପୁଜୀ ନଗରର ସେଇ ଘରେ ରହୁଥିଲ। ଏସିଆନ୍ ଟ୍ରାନ୍ସପୋର୍ଟ (ଏକ ପ୍ରାଇଭେଟ ସଂସ୍ଥା)ର ଅଫିସ୍ ପରିଚାଳନା କରୁଥିଲ। ମୁଁ ଛୁଟିରେ ଆସିଲେ ତମରି ପାଖରେ ରହୁଥିଲି। ସେଇ ଘରେ ମୋର କେତେ ସ୍ମୃତି ଜଡ଼ିତ ହୋଇ ରହିଛି। ତମର, ମୋର, ତମ ସହକର୍ମୀ ଉଦୟ ଭାଇଙ୍କର, ତାଙ୍କ ସାନଭାଇ ପ୍ରଫୁଲ୍ଲର କେତେ ସାଙ୍ଗସାଥୀ ସେଠିକି ଆସୁଥିଲେ। ସେ ଘରଟି ଥିଲା ବନ୍ଧୁ ମିଳନର ଏକ କେନ୍ଦ୍ରସ୍ଥଳ। ଆମ ଦୁଇଜଣଙ୍କର ଭବିଷ୍ୟତ ଜୀବନର ବୀଜ ସେଇ ଘରୁ ହିଁ ତମେ ବୁଣିଥିଲ। ସେଇ ଘରେ ମୋ ଜୀବନ ସହିତ ତମେ ବାନ୍ଧି ଦେଇଥିଲ ୰ବୈକୁଣ୍ଠ ବିଶ୍ୱାଳଙ୍କ ଜୀବନକୁ। ଆଉ ତମ ଜୀବନର ନିଷ୍ପତ୍ତି ତମେ ସେଇ ଘରୁ ହିଁ ସ୍ଥିର କରିଥିଲ।

ତା'ପରେ ତମେ ଅଲ ଇଣ୍ଡିଆ ରେଡ଼ିଓ ସର୍ଭିସ୍‌ରେ ଯୋଗ ଦେଲ। ମୋ ଜୀବନର ମୋଡ ବି ବଦଳିଗଲା। ତମଠାରୁ ଯାହା ସବୁ ଆଶା କଲି ପାଇଲି ନାହିଁ। ମନରେ ଅଭିମାନ ଭରିଗଲା। ତରଡ଼ିପାଳରେ ଭାଇ (୰ବିଚିତ୍ରାନନ୍ଦ ନାଥଶର୍ମା)ଙ୍କ ଠାରୁ ଅବହେଳା ମୋତେ କଷ୍ଟ ଦେଉ ନଥିଲା ମାତ୍ର ତମଠୁ ଅବହେଳା ପାଇଲେ ମୁଁ ମୋଟେ ସହି ପାରୁ ନଥିଲି। ଅକୁହା କୋହକୁ ଅନ୍ତରରେ ଚାପି ରଖି ରାତି ରାତି କେତେ କାନ୍ଦିଛି। କହିବି ସେ ଅବହେଳା କଥା ଶୁଣିବ ? ନା ଆଉ କହିବି ନାହିଁ। କାରଣ ତମେ ତ ମୋଠୁ କ୍ଷମା ମାଗି ନେଇଛ। ଭୁବନେଶ୍ୱରରେ ଥରେ ତମକୁ ପାଖରେ ପାଇ ସବୁ କଥା ଗୋଟି ଗୋଟି କରି କହିଥିଲି। ମୋ ହାତକୁ ମୁଠାଇ ଧରି କହିଥିଲ, "ମୁଁ ତୋ' ପ୍ରତି ବହୁତ ଅବହେଳା କରିଛି। ସବୁ ଭୁଲି ଯାଇ ତୋ' ଭାଇକୁ କ୍ଷମା କରିଦେ।" ତମର ସେଇ ପଦେ କଥାରେ ମୋ ହୃଦୟରୁ ଅଭିମାନର ପାହାଡ଼ ଭାଙ୍ଗି ଚୁନା ହୋଇ ଯାଇଥିଲା। ଦୀନେଶ ଭଟ୍ଟାଚାର୍ଯ୍ୟଙ୍କ ଘରେ ଦେଖିଥିଲି ତମ ସ୍ୱାଭିମାନର ହିମାଳୟ ଶିଖରକୁ। ସେଦିନ ଅନୁଭବ କଲି ତମ ଅନ୍ତରରେ ଲୁକାୟିତ

ସ୍ୱଚ୍ଛ ସଲିଳା ଫଲ୍‌ଗୁଧାରାକୁ। ତମେ ଥିଲ ବଡ଼ପୁଅ। ସାନଭାଇ ଭଉଣୀମାନଙ୍କର ଶ୍ରଦ୍ଧା ସମ୍ମାନ ତମ ପ୍ରତି କେତେ, ଗୋଟିଏ କଥା ମନେ ପକାଇ ଦେଉଛି।

ତମ ସାନଭଉଣୀ ବୁଢ଼ୀ (ବିଜୟଲକ୍ଷ୍ମୀ) ସେ ବର୍ଷ ମାଟ୍ରିକ୍ୟୁଲେସନ୍ ପରୀକ୍ଷା ଦେଉଥାଏ। ଆମେ ସମସ୍ତେ ଘରେ ଥିଲେ। ଯେତେବେଳେ ସେ ପରୀକ୍ଷା କେନ୍ଦ୍ରରୁ ଫେରିଲା ମୁଁ ତା' ପାଖକୁ ଦୌଡ଼ିଗଲି ପରୀକ୍ଷାରେ କେମିତି କରିଛି ପଚାରିବା ପାଇଁ। ସେ ଯେମିତି ମୋତେ ଦେଖିଲା ବହୁତ ଜୋର୍‌ରେ କାନ୍ଦି ଉଠିଲା। ସମସ୍ତେ ଭାବିଲେ ପରୀକ୍ଷାରେ ବୋଧହୁଏ ଭଲ କରିପାରି ନାହିଁ ତେଣୁ କାନ୍ଦୁଛି। ତା'ର କାନ୍ଦିବାର କାରଣ କିନ୍ତୁ ଭିନ୍ନ ଥିଲା। ପରୀକ୍ଷା କେନ୍ଦ୍ରକୁ ସବୁ ଝିଅଙ୍କର ଭାଇମାନେ ଯାଇଥିଲେ କେବଳ ତାରି ଭାଇ ଯାଇ ନଥିଲେ। ତେଣୁ ଅନ୍ତରର ଅଭିମାନ ଆଖିରୁ ଲୁହ ହୋଇ ଝରୁଥିଲା। ସେଦିନ ତା'ର ଏ ଅଭିବ୍ୟକ୍ତି ଶୁଣି ତମେ ହସିଥିଲ ସିନା କିନ୍ତୁ ତା'ର ଭ୍ରାତୃ ପ୍ରେମର ଗଭୀରତାକୁ ତମ ଅନ୍ତର ନିଶ୍ଚୟ ମାପିଥିବ।

ଯେଉଁଦିନ ତମ ଅବର୍ତ୍ତମାନର ନିଦାରୁଣ ସମ୍ବାଦ ମୁଁ ପାଇଲି, ମୋର କ'ଣ ହେଲା ତାହା ମୁଁ ଜାଣି ପାରିଲି ନାହିଁ, ତେଣୁ କହି ପାରୁନାହିଁ। ସାଙ୍ଗେସାଙ୍ଗେ କିନ୍ତୁ ବୋଉ (ନାରୀଗାଁ)ର ମୁହଁ ମୋତେ ଦିଶିଗଲା। ଭାବିଲି ଭଲ ହୋଇଛି ବୋଉ ତମ ଆଗରୁ ଚାଲି ଯାଇଛି। ନହେଲେ "ଛାଡ଼ିବେ ଜୀବନ ଯଶୋଦା ଗୋପେ କୃଷ୍ଣ ନଦେଖି" ଅବସ୍ଥା ତା'ର ହୋଇଥାନ୍ତା। ତା' 'ରଙ୍କି' (ତମ ପ୍ରତି ତା'ର ଆଦରର ଡାକ) କି ନଦେଖି ସେ କେମିତି ବଞ୍ଚିଥାନ୍ତା ଯେ। ଥରେ ମୋତେ ସେ କହିଥିଲା, ସାନ ପିଲାମାନଙ୍କ ପାଇଁ ତା'ର କୌଣସି ଚିନ୍ତା ନାହିଁ। ସେମାନଙ୍କର ସମସ୍ତ ଦାୟିତ୍ୱ ସେ ତା' 'ରଙ୍କି' କି ଦେଇ ଦେଇଛି। ମନେପଡୁଛି ତମେ ସକାଳେ ପଖାଳ ଖାଇବ ବୋଲି ସେ ସଜାଡ଼ି ଥିବା ପଖାଳ ଖିଆ ବ୍ୟଞ୍ଜନ। ତମର ପ୍ରିୟ ବଡ଼ିଚୁରା, ମସଲା ଦିଆ ଭଜାବଡ଼ି, ଅତି ଛୋଟ ଚିଙ୍ଗୁଡ଼ି ଶୁଖୁଆ ସାରୁ ସାଙ୍ଗରେ ମିଶି ହୋଇଥିବା ଚଡ଼ଚଡ଼ି, ବଡ଼ମାଛ ସାଧା ଭଜା, ପୁଣି ମସଲା ଗୋଳାଇ ହୋଇଥିବା ଭଜା ଇତ୍ୟାଦି ଇତ୍ୟାଦି। ଆଉ ମଧ୍ୟାହ୍ନ ଭୋଜନ କଥା କ'ଣ କହିବି ? ତମକୁ ସିନା ସେ ରଙ୍କି ବୋଲି ନାଁ ଦେଇଥିଲା, କିନ୍ତୁ ବାସ୍ତବରେ ତମେ ମୋଟେ ରଙ୍କି ନଥିଲ।

ଆକ୍ସିଡେଣ୍ଟରେ ହାତ ଭାଙ୍ଗି ଯାଇଥିଲା ତମର। କାନନବିହାରରେ ଥିବା ଘରେ ତମେ ବିଶ୍ରାମରେ ଥିଲ। ଖବର ଶୁଣି ମୁଁ ତମକୁ ଦେଖିବାକୁ ଗଲି। ଖଟ ଉପରେ ପାଖରେ ବସାଇ କେତେ ଅତୀତ ସ୍ମୃତି ସବୁକୁ ମନେ ପକାଇଲ। ନାରୀଗାଁରୁ ଆମେ

ତରଡ଼ିପାଳ ଆସୁଥିଲେ ଭେଡ଼ା ବିଲ ବାଟରେ। ବିଲ ମଝିରେ ନାଳ ଭଳିଆ ଛୋଟ ନଈଟିଏ। ପାରି ହେବା ପାଇଁ ଡଙ୍ଗାଟି ଥିଲା ଆରପଟରେ। ତମେ ନଈ ପହଁରି ଆରପଟକୁ ଯାଇ ଡଙ୍ଗା ଆଣିଲ ଏବଂ ନିଜେ କାତ ମାରି ଆମେ ନଈ ପାର ହୋଇଥିଲେ। ନଈ ପଠାରେ ଗ୍ରାମବାସୀଙ୍କର ଥିଲା କଖାରୁ, ଜହ୍ନି, କାକୁଡ଼ି, ଫୁଟି କାକୁଡ଼ି ଓ ତରଭୁଜର ପାଳ। ପାଳ ମଝିରେ ଥିଲା ଛୋଟ ଛୋଟ ପଲା। ଯେଉଁଥିରେ ରାତିରେ ରହି ଚାଷୀ ତା'ର ଫସଲକୁ ଜୀବଜନ୍ତୁଙ୍କ ମୁହଁରୁ ରକ୍ଷାକରେ ଓ ଦିନବେଳେ ବିଶ୍ରାମ ନିଏ। ନଈପଠାରେ ହୋଇଥିବା ଫସଲ ଦେଖି ତମେ ବହୁତ ଖୁସି ହୋଇଥିଲ। ଆମ ଗାଁ ମୁଣ୍ଡ ଠାକୁରାଣୀମାଳ ଖୋଲା ଚାନ୍ଦିନୀ ଉପରେ ବସି କେତେ କଥା ହୋଇଥିଲେ ଆମେ। ସବୁ ମନେପକାଇ ତମେ ମୋତେ ସେଦିନ କହିଥିଲ।

ଏ ବର୍ଷ ରାଖୀପୁନେଇଁ ଆସିବାକୁ ୨/୩ ଦିନ ବାକିଥାଏ। ତମେ ଟେଲିଫୋନ୍ କରି କହିଲ, "ବର୍ତ୍ତମାନ ବେଳକାଳ ଠିକ୍ ନାହିଁ। ଆମକୁ ବୟସ ବି ହୋଇଗଲାଣି। ତୁ ପୁନେଇଁ ଦିନ୍ ଆସିବୁ ନାହିଁ।" ମୁଁ ବି ସମ୍ମତି ଜଣାଇଲି। ଅନ୍ତର୍ଯ୍ୟାମୀ ଦେହ ଖରାପ ଅଛି, ସେ ଭଲ ହୋଇଗଲେ ତା' ସାଙ୍ଗରେ ପରେ ତମ ପାଖକୁ ଯିବି ବୋଲି କହିଲି। ଏବେ ଭାବୁଛି କ'ଣ ଆଉ ସୁରକ୍ଷା ଦେଇ ପାରିବ ନାହିଁ ବୋଲି 'କରୋନା' ବାହାନାରେ ଯିବା ପାଇଁ ମନା କରିଦେଲ ? ତମ ରାଖୀ ବାକି ରହିଲା। ମୁଁ ନେଇ କରି ଯିବି। ଅନ୍ତର୍ଯ୍ୟାମୀ ସାଙ୍ଗରେ ନୁହେଁ କି ତମ କାନନବିହାର ଘରକୁ ନୁହେଁ। ତମ ପାଖକୁ........।

ଆଜିକି ଏଗାରଦିନ ହେଲାଣି ତମେ ଲୀଳା ସାରି ବାହୁଡ଼ି ଗଲଣି। ତମ ଆରାଧ୍ୟ 'ସାଇନାଥ'ଙ୍କ ଚରଣରେ ଲୀନ ହେବା ପାଇଁ ପଥ ଆଲୋକିତ କରିବାକୁ ମୁଁ 'ଶ୍ରୀ ଜଗନ୍ନାଥ'ଙ୍କ ପାଦପଦ୍ମରେ ପ୍ରଦୀପ ଜାଳି ପ୍ରାର୍ଥନା କରୁଛି।

(ଶ୍ରୀ ସୁରେଶ ଚନ୍ଦ୍ର ନାୟକଙ୍କ ମହାପ୍ରୟାଣରେ ଲିଖିତ)



# ବନ୍ଧବାହାଲରେ ପଚିଶ ବର୍ଷ

ଶିକ୍ଷକତାକୁ ବୃତ୍ତି କରି ଜୀବନର ପଇଁତିରିଶଟି ବର୍ଷ ମୋର କଟିଛି । ମାତ୍ର କୌଣସି ଦିନ ଗପଟିଏ କି କବିତାଟିଏ ଲେଖିବା ପାଇଁ ମୁଁ କଲମ ଧରି ନାହିଁ କି ସେ ପ୍ରକାର ପ୍ରେରଣା କେବେ ମଧ ଅନୁଭବ କରିନାହିଁ । ଏବେ ଅବସର ଜୀବନରେ ଏକା ଏକା ବସି ରହିଲେ ଅତୀତର ସ୍ମୃତିସବୁ ମନକୁ ଆସି ଯାଉଛି । ସ୍ମୃତି ଗୁଡ଼ିକୁ ଏକାଠି କରି କ୍ଷୁଦ୍ର ପୁସ୍ତକଟିଏ (ଯାହା ହଜାଇ ଦେଇଛି ଥରେ) ମଧ ପ୍ରକାଶ ପାଇଛି । କେତେ ଜଣ ପାଠକ ବନ୍ଧୁଙ୍କ ଠାରୁ ଶୁଣିଲି ଯେ ସ୍ମୃତିକଥା ଗୁଡ଼ିକ ତାଙ୍କୁ ଭଲ ଲାଗିଲା । ସେଇ ସ୍ମୃତିମାଲ୍ୟ ଭିତରେ 'ବନ୍ଧବାହାଲ' ଏକ ଅମ୍ଳାନ କୁସୁମ । ସେଇଠି ରହି ଯାଇଛି ମୋର ପଚିଶ ବର୍ଷର ଜୀବନ କଥା ଓ ସେଇଠି ଅଛି ମୋ ପୁଅଝିଅଙ୍କର ଶୈଶବ ସ୍ମୃତି ।

ଓଡ଼ିଶା ମଧ୍ୟପ୍ରଦେଶ ସୀମାନ୍ତରେ ବନ୍ଧବାହାଲ ଏକ ଛୋଟିଆ ଗାଁ । ଗାଁଟିର ବୁକୁ ଚିରି ଦୀର୍ଘ ପ୍ରଶସ୍ତ ରାଜରାସ୍ତାଟିଏ ପ୍ରଲମ୍ବିତ । ଅନ୍ୟ ଶାଖା ରାସ୍ତାଗୁଡ଼ିକ ରାଜରାସ୍ତାଟିକୁ ସମକୋଣରେ ଛେଦ କରିଛନ୍ତି । ମୁଁ କହୁଛି ୧୯୭୪ ମସିହା କଥା । ଯେଉଁଦିନ ବନ୍ଧବାହାଲରେ ପ୍ରଥମେ ପହଞ୍ଚିଥିଲି, ରାସ୍ତାଟିକୁ ଦେଖି ମନେପଡ଼ି ଯାଇଥିଲା ଇତିହାସ ବହିରେ ପଢ଼ିଥିବା ପ୍ରାଚୀନ ମହେଞ୍ଜୋଦାରୋ ସଭ୍ୟତାର ରାସ୍ତା ବିଭାଜନ ଶୈଳୀ । ପ୍ରାଚୀନ ମହେଞ୍ଜୋଦାରୋ ସଭ୍ୟତାରେ ରାସ୍ତାଗୁଡ଼ିକ ପରସ୍ପରକୁ ସମକୋଣରେ ଛେଦ କରୁଥିଲେ । ବନ୍ଧବାହାଲ ଗାଁରେ ରାଜରାସ୍ତାର ଦୁଇକଡ଼ରେ ଛିଡ଼ା ହୋଇଛି ଧାଡ଼ି ଧାଡ଼ି ଖପର ଛାଉଣୀ ଘର । ମୋର ଜନ୍ମ ଉପକୂଳ ଅଞ୍ଚଳରେ (କେନ୍ଦ୍ରପଡ଼ା ଜିଲ୍ଲାରେ) । ଉପକୂଳ ଅଞ୍ଚଳରେ ଜନବହୁଳତା ହେତୁ ଗାଁମାନଙ୍କରେ ଏମିତି ଜ୍ୟାମିତିକ ନକ୍ସାରେ ରାସ୍ତା ଓ ଘର ତିଆରି ପ୍ରାୟ ଦେଖିବାକୁ ମିଳି ନଥାଏ । ବନ୍ଧବାହାଲ ଗାଁର ପରିଚ୍ଛନ୍ନତା ସେଦିନ ମନରେ ଆନନ୍ଦ ଭରି ଦେଇଥିଲା । ଗାଁଟି ତିନୋଟି ପଡ଼ାରେ ବିଭକ୍ତ । ଯଥା- ବରଡିହିପଡ଼ା, ଗଉଁଟିଆପଡ଼ା ଓ ଇସ୍କୁଲ ପଡ଼ା । ଗାଁର ଏ ମୁଣ୍ଡରୁ ସେ ମୁଣ୍ଡ ଯାଏଁ ଲମ୍ବିଥିବା ମୁଖ୍ୟ ରାସ୍ତା କଡ଼ରେ କେଉଁଠି ବିଶାଳ ବଟବୃକ୍ଷ ତ କେଉଁଠି ସୁଶୀତଳ ଛାୟା ପ୍ରଦାନକାରୀ ବଡ଼ ବଡ଼ ଲିମ୍ବଗଛ । ପୁଣି କେଉଁଠି ଅଛି ଧାଡ଼ି ଧାଡ଼ି ଆମ୍ବଗଛ ।

ଅଧିବାସୀମାନଙ୍କ ଭିତରେ ଅଧିକାଂଶ ଆଦିବାସୀ। ନାରୀ ଶିକ୍ଷାର ପ୍ରସାର ଲାଗି ସେ ସମୟରେ ବନ୍ଧବାହାଲ ଭଳି ସୀମାନ୍ତ ଅଞ୍ଚଳରେ ଗଢ଼ି ଉଠିଥିଲା ବାଳିକା ବିଦ୍ୟାଳୟଟିଏ। ଗମନା ଗମନର ବିଶେଷ ସୁବିଧା ନଥିଲା ସେତେବେଳେ। ଝାରସୁଗୁଡ଼ାରୁ ମଧ୍ୟପ୍ରଦେଶର ଯଶପୁର ଯାଉଥିବା 'ଜୟ ବାଲାଜୀ' ବସ୍‌ରେ ଗଲେ ତେଲିଯୋର ଚେକ୍ ଗେଟ୍ ଠାରେ ଓହ୍ଲାଇବାକୁ ହୁଏ। ସେଠୁ ୩/୪ କି.ମି. ବାଟ ଚାଲି ଚାଲି ଗଲେ ବନ୍ଧବାହାଲରେ ପହଞ୍ଚି ହେଉଥିଲା। ବାଟରେ 'ଇବ୍' ନଦୀ ପାର ହେବାକୁ ପଡୁଥିଲା। ଏମିତି ଏକ ଅମଡ଼ା ରାଇଜକୁ ସେତେବେଳେ କେହି ଯିବାକୁ ରାଜି ହେଉ ନଥିଲେ। ମୁଁ ମଧ ଥରେ ଯାଇ ଅଧବାଟରୁ ଫେରି ଆସିଥିଲି। ପୁଣି କାହିଁକି ଗଲି ଏବଂ ସେଠି ଦୀର୍ଘ ପଚିଶ ବର୍ଷ କାଳ କଟାଇଲି ଏବେ ଭାବିଲେ ଆଶ୍ଚର୍ଯ୍ୟ ଲାଗେ। ମନେହୁଏ ଯେମିତି ତାହାହିଁ ଥିଲା ମୋ ପାଇଁ ବିଧିନିର୍ଦ୍ଦିଷ୍ଟ କର୍ମଭୂମି।

ଆଗରୁ ଭଦ୍ରକ ଜିଲ୍ଲାର 'କାହ୍ନୁ ଚରଣ ବାଳିକା ବିଦ୍ୟାଳୟ'ରେ ଗୋଟିଏ ବର୍ଷ କାମ କରିଥିଲେ ବି 'ବନ୍ଧବାହାଲ ବାଳିକା ବିଦ୍ୟାଳୟ'ରୁ ହିଁ ଧାରାବାହିକ ଭାବେ ମୋ ଶିକ୍ଷକ ଜୀବନର ଆରମ୍ଭ। ଗାଁ ମଝିରେ ମୁଖ୍ୟରାସ୍ତାକୁ ଲାଗିଛି ସ୍କୁଲର ହତା। ରାସ୍ତାଠାରୁ କିଛି ଦୂର ପଛକୁ ଗଲେ ଛିଡ଼ା ହୋଇଛି ଆଜବେଷ୍ଟସ୍ ଛାଉଣୀ ବିଶିଷ୍ଟ ଏଲ୍ ଟାଇପ୍ ସ୍କୁଲ ଘର। ଶ୍ରେଣୀ କୋଠରୀ ଗୁଡ଼ିକ ପ୍ରଶସ୍ତ। ପ୍ରତ୍ୟେକ କୋଠରୀରେ ଦୁଇଟି ଲେଖାଏଁ ଦରଜା ଓ ବଡ଼ ବଡ଼ ଝରକା ରହିଛି। ପଛରେ ଆମ୍ବ ବଗିଚା, ତା'ପଛକୁ ବିସ୍ତୃତ ଚାଷ ଜମି ଓ ତା' ପଛକୁ ଅନାଇଲେ ଦିଶେ ଶାଳ, ମହୁଲ, କେନ୍ଦୁ ଇତ୍ୟାଦି ବୃକ୍ଷଗୁଡ଼ିକର ଗହଳିଆ କୁଞ୍ଜବନ। ସ୍କୁଲ ଘରର ଦୁଇକଡ଼ରେ ପର୍ଯ୍ୟାପ୍ତ ଖୋଲାଜାଗା। ଗୋଟିଏ କଡ଼ର ଖୋଲାଜାଗା ଝିଅମାନଙ୍କର ଖେଳପଡ଼ିଆ ହିସାବରେ ବ୍ୟବହୃତ ହେଉଥିଲା ବେଳେ ଅନ୍ୟପଟରେ T.R.W. ଡିପାର୍ଟମେଣ୍ଟ ତରଫରୁ ତିଆରି ହୋଇଛି ଆଦିବାସୀ ଝିଅମାନେ ରହିବା ପାଇଁ ହଷ୍ଟେଲ। ହଷ୍ଟେଲକୁ ଲାଗି କରି ଅଛି ସିମେଣ୍ଟ ଚାନ୍ଦିନୀ ପରିବେଷ୍ଟିତ ପ୍ରଶସ୍ତ କୂଅ। ସେତେବେଳେ ସ୍କୁଲର ପାଚେରୀ ନଥିଲା। ମାତ୍ର ସମ୍ମୁଖରେ ଥିବା ଶିଶୁ, ବେଲ, ଗମ୍ଭାରୀ ଓ କୃଷ୍ଣଚୂଡ଼ା ଇତ୍ୟାଦି ସୁସଜ୍ଜିତ ବୃକ୍ଷରାଜି ସ୍କୁଲଟିକୁ ସାଧାରଣ ଲୋକ ଲୋଚନରୁ ଲୁଚାଇ ରଖୁଥିଲେ। ମୋଟ ଉପରେ ସ୍କୁଲର ପରିବେଶ ଥିଲା ଅତି ମନୋରମ। ୧୯୭୪ ମସିହା ଜୁଲାଇ ମାସରେ ମୁଁ ସ୍କୁଲରେ ଯୋଗ ଦେଲି। ସ୍କୁଲରେ ପହଞ୍ଚି ଯାହା ଦେଖିଲି ସ୍କୁଲଟି ବାହ୍ୟ ସୌନ୍ଦର୍ଯ୍ୟରେ ଯେତିକି ଧନୀ, ଅନ୍ତଃ ସୌନ୍ଦର୍ଯ୍ୟରେ ଥିଲା ସେତିକି ଦରିଦ୍ର। ଅର୍ଥାତ୍ ସ୍କୁଲର ସମ୍ପଦ (ଛାତ୍ରୀ ସଂଖ୍ୟା) ଥିଲା ଅତି ନଗଣ୍ୟ।

ଷଷ୍ଠ ଶ୍ରେଣୀ ଠାରୁ ଏକାଦଶ ଶ୍ରେଣୀ ପର୍ଯ୍ୟନ୍ତ ୬ଟି ଶ୍ରେଣୀରେ ସର୍ବମୋଟ ଛାତ୍ରୀ ସଂଖ୍ୟା ଥିଲା ଶହେରୁ କମ୍। ବେଳେବେଳେ ଏମିତି ହୁଏ (ବର୍ଷାଦିନେ) ଆମେ ୯ ଜଣ ଶିକ୍ଷୟିତ୍ରୀ ଥିଲାବେଳେ ସ୍କୁଲରେ ୯ ଜଣ ଛାତ୍ରୀ ବି ନଥାନ୍ତି। ଏମିତି ଅବସ୍ଥାରେ ସ୍କୁଲଟି ତିଷ୍ଠି ରହିବ କି ଭାଙ୍ଗିଯିବ ଏହା ସମସ୍ତଙ୍କର ଚିନ୍ତାର ବିଷୟ ଥିଲା। ମୁଁ ଯୋଗଦେବା ପୂର୍ବରୁ ସ୍କୁଲରେ କେହି ତାଲିମପ୍ରାପ୍ତ ହେଡ଼ମାଷ୍ଟର ନଥିଲେ। ଜଣେ ଅବସରପ୍ରାପ୍ତ ଶିକ୍ଷକଙ୍କ ଦସ୍ତଖତ୍‌ରେ ସ୍କୁଲ କାଗଜପତ୍ର କାମ ଚାଲୁଥିଲା। ସାଥୀ ଶିକ୍ଷୟିତ୍ରୀ (ଯେଉଁମାନେ ମୋ ପୂର୍ବରୁ ସ୍କୁଲରେ ଥିଲେ) ମାନଙ୍କ ଠାରୁ ହେଡ଼ମାଷ୍ଟରଙ୍କ ବିଷୟରେ ଯାହା ଶୁଣିଲି ହସି ହସି ବେଦମ୍ ହୋଇ ଯାଇଥିଲି। ବେଳେବେଳେ ଆମେ ସବୁ ଏକାଠି ବସି ସେଇ ସବୁ ବିଷୟ ଆଲୋଚନା କରି ଆନନ୍ଦ ଉପଭୋଗ କରୁଥିଲୁ। ହେଡ଼ମାଷ୍ଟର ମହାଶୟ ଦିନେ ଦିନେ ସ୍କୁଲକୁ ଆସନ୍ତି। ଷଷ୍ଠ ଶ୍ରେଣୀଠାରୁ ଏକାଦଶ ଶ୍ରେଣୀ ପର୍ଯ୍ୟନ୍ତ ଗୋଟିଏ ପିରିୟଡ଼ରେ ବୁଲି ଦିଅନ୍ତି। ତା'ପରେ ଶିକ୍ଷୟିତ୍ରୀମାନଙ୍କୁ "ଏ ନହ୍ନୀମନେ ଦେଖବ ଗା, ମୁଇଁ ଯାଉଛେଁ" (ଝିଅମାନେ ଦେଖିବରେ ମୁଁ ଯାଉଛି) କହି ସ୍କୁଲରୁ ଚାଲି ଯାଆନ୍ତି।

ସ୍କୁଲରେ ୧୦ଟାରୁ ୪ ଟା ପର୍ଯ୍ୟନ୍ତ ନିର୍ଦ୍ଧାରିତ ସମୟ ବି ବେଳେବେଳେ ରହୁ ନଥିଲା। କେତେବେଳେ ୩ଟା କେତେବେଳେ ୩.୩୦ ଯେତେବେଳେ ମନହେଲା ପିଲାଙ୍କୁ ଛାଡ଼ି ଦେଇ ଶିକ୍ଷୟିତ୍ରୀମାନେ ଚାଲି ଯାଉଥିଲେ। ସାଥୀମାନଙ୍କ ଠାରୁ ଶୁଣିଥିବା ଏକ ଘଟଣା ଲେଖୁଛି। ସମ୍ମାନନୀୟ ରଜତ କର ମହାଶୟ ସେତେବେଳେ ସୁନ୍ଦରଗଡ଼ ଜିଲ୍ଲାରେ ସର୍କଲ ଇନିସ୍‌ପେକ୍ଟର ଥାଆନ୍ତି। ସ୍କୁଲ ପରିଦର୍ଶନ ପାଇଁ ସେ ଆସୁଥାନ୍ତି। ବାଟରେ ଦେଖିଲେ ପିଲାମାନେ ବ୍ୟାଗପତ୍ର ଧରି ଘରକୁ ଫେରୁଛନ୍ତି। ଘଣ୍ଟାରେ ୪ଟା ବାଜି ନାହିଁ ଅଥଚ ସ୍କୁଲ ଛୁଟି ହୋଇ ଗଲାଣି। ଇନ୍‌ସପେକ୍ଟର ମହାଶୟ ସ୍କୁଲରେ ପହଞ୍ଚିଲେ। ମ୍ୟାନେଜିଂ କମିଟିର ସେକ୍ରେଟାରୀ ସଙ୍କୋଚରେ ସମ୍ମୁଖକୁ ଆସିଲେ ନାହିଁ। ଶିକ୍ଷୟିତ୍ରୀମାନେ (ସମସ୍ତେ ସ୍କୁଲ ପାଖରେ ହିଁ ରହୁଥିଲେ) ଲଜ୍ଜିତ ହେଲେ। ଗାଁଟିରେ ସେତେବେଳେ ଚା' ଦୋକାନଟିଏ କି ଜଳଖିଆ ଦୋକାନଟିଏ କିଛି ବି ନଥିଲା। ଶିକ୍ଷୟିତ୍ରୀମାନେ ଅନନ୍ୟୋପାୟ ହୋଇ ମୁଢ଼ି, ଚିନାବାଦାମ ଭଜା ଓ ନାଲି ଚା ଦେଇ ତାଙ୍କୁ ସତ୍କାର କଲେ। ଉଦାର ହୃଦୟ ଇନ୍‌ସପେକ୍ଟର ଆତିଥ୍ୟ ଗ୍ରହଣ କଲେ। ସେକ୍ରେଟାରୀ ଓ କେତେଜଣ ସଦସ୍ୟଙ୍କୁ ଡକାଇ ଶିକ୍ଷୟିତ୍ରୀମାନଙ୍କୁ କେତେକ ପରାମର୍ଶ ଦେଇ ବିଦାୟ ନେଲେ। କୌଣସି କ୍ଷତିକାରକ ପଦକ୍ଷେପ ନେଇ ନଥିଲେ। ୧୯୭୪ ମସିହାରେ ମୁଁ ଏବଂ ଶ୍ରୀମତୀ ବିଷ୍ଣୁପ୍ରିୟା ପଟେଲ B.Ed. ଟ୍ରେନିଂ କୋର୍ଷ ଶେଷ କରି

ସ୍କୁଲରେ ଯୋଗ ଦେଲୁ। ଶ୍ରୀମତୀ ପଟେଲ ସ୍କୁଲରୁ ଛୁଟି (ଷ୍ଟଡ଼ିଲିଭ୍) ନେଇ ବଲାଙ୍ଗୀର ଟ୍ରେନିଂ କଲେଜରେ ଟ୍ରେନିଂ ନେଉଥିଲେ ଓ ମୁଁ ସମ୍ବଲପୁର ଟ୍ରେନିଂ କଲେଜରେ। ଶ୍ରୀମତୀ ପଟେଲ ପ୍ରଧାନ ଶିକ୍ଷୟିତ୍ରୀ ଦାୟିତ୍ୱ ଗ୍ରହଣ କଲେ ଓ ମୁଁ ଫାଷ୍ଟ ଆସିଷ୍ଟାଣ୍ଟ ହିସାବରେ ଯୋଗଦେଲି। ତା' ପୂର୍ବରୁ ସ୍କୁଲର ଯେତୋଟି ବ୍ୟାଚ୍ (ବୋଧହୁଏ ତିନୋଟି) ବୋର୍ଡ଼ ପରୀକ୍ଷା ଦେଇଥିଲେ, ଜଣେ ହେଲେ ଝିଅ କୌଣସି ବର୍ଷ ପାସ୍ କରି ନଥିଲେ। ଲାଗି ଲାଗି ୩ ବର୍ଷର ପରୀକ୍ଷା ଫଳ ଥିଲା 'ଶୂନ'। ପୁଣି କେହି T.G. Teacher ନ ଥିବାରୁ ସ୍କୁଲର ରେକଗ୍‌ନେସନ ପାଇଁ କର୍ତ୍ତୃପକ୍ଷ ଆଶଙ୍କାରେ ଥାନ୍ତି। ଏଇଭଳି ଘଡ଼ିସନ୍ଧି ମୁହୂର୍ତ୍ତରେ ମୁଁ ସେ ସ୍କୁଲରେ ଯୋଗ ଦେଇଥିଲି।

ସେତେବେଳେ ଇଂରାଜୀ ଭାଷାର ଦୁଇଟି ପେପର ପରୀକ୍ଷା ହେଉଥିଲା। ଫାଷ୍ଟ ପେପରରେ Essay, letter, translation ଇତ୍ୟାଦି ସାଙ୍ଗରେ ଦୁଇଟି ବହି ପଢ଼ା ହେଉଥିଲା। "Treasure Island" ପ୍ରେସି ପାଇଁ ଓ "Tales from Tagore" ପ୍ରଶ୍ନ ଉତ୍ତର ପାଇଁ। ଆଶ୍ଚର୍ଯ୍ୟ ହୋଇଥିଲି ସିଲାବସ୍‌ରେ ଏ ବହି ଦୁଇଟି ଅଛି ବୋଲି ପିଲାମାନେ କି ଇଂରାଜୀ ପଢ଼ାଉଥିବା ଶିକ୍ଷକ କେହି ବି ଜାଣି ନଥିଲେ। କ'ଣ କରାହେବ ପ୍ରଧାନ ଶିକ୍ଷୟିତ୍ରୀ ଚିନ୍ତାରେ ପଡ଼ିଲେ। ବହି ଦୁଇଟି ସଂଗ୍ରହ କରି ଗୋଟିଏ ଝିଅକୁ ରାତିରେ ପଢ଼ାଉଥିଲି। ଝିଅଟିର ଘର ସ୍କୁଲ ପାଖରେ। ରାତିରେ ଘରକାମ ସାରି ସେ ମୋ ପାଖକୁ ଆସେ। ପଢ଼ିସାରି ମୋରି ପାଖରେ ଶୁଏ। ଝିଅଟି କହୁଥିଲା "ଦିଦି, ମୁଁ ପାସ୍ କରିବି କି ଫେଲ୍ ହେବି ସେପାଇଁ ମୋର ଚିନ୍ତା ନାହିଁ। ଆପଣମାନେ ମୋ ଉପରେ ଯେଉଁ ଆଶା ରଖିଛନ୍ତି ସେଥିପାଇଁ ମୁଁ ଚିନ୍ତିତ।" ଯା'ହେଉ ସ୍କୁଲ ଆକାଶରୁ ଅନ୍ଧକାର ହଟିଲା। ଝିଅଟି ବୋର୍ଡ଼ ପରୀକ୍ଷାରେ ୪୧୧ ନମ୍ବର ରଖି ହାୟର ସେକେଣ୍ଡ ଡିଭିଜନ୍‌ରେ ପାସ୍ କଲା। ସେତେବେଳେ ନମ୍ବର ସହ ଡିଭିଜନକୁ ମଧ୍ୟ ଗୁରୁତ୍ୱ ଦିଆ ଯାଉଥିଲା। ପରେ ଝିଅଟି ସି.ଟି.ଟ୍ରେନିଂ କରି ଏକ ପ୍ରାଥମିକ ବିଦ୍ୟାଳୟରେ ଶିକ୍ଷୟିତ୍ରୀ ହୋଇଥିଲା।

ଧୀରେ ଧୀରେ ପାଖପାଖ ଗାଁର ଲୋକମାନଙ୍କ ମନରେ ପ୍ରତ୍ୟୟ ଦୃଢ଼ ହେଲା। ଯେଉଁମାନେ କହୁଥିଲେ ଝିଅମାନେ ପାଠ ପଢ଼ି କ'ଣ କରିବେ ସେମାନେ ଝିଅମାନଙ୍କୁ ପଢ଼ାଇବାକୁ ଆଗ୍ରହୀ ହେଲେ। ରବିବାର ଓ ଛୁଟିଦିନମାନଙ୍କରେ ଆମ୍ଭମାନଙ୍କୁ ଅଭିଭାବକମାନଙ୍କ ଘରକୁ ଯାଇ ତାଙ୍କୁ ବୁଝାଇବାକୁ ପଡୁଥିଲା। ବାଲିଶଙ୍କରା ବ୍ଲକ ହେଡ଼କ୍ୱାଟରରେ ଥିବା 'କନ୍ୟାଶ୍ରମ' ଓ ସୁନ୍ଦରଗଡ଼ ସଦରରେ ଥିବା 'ସେଣ୍ଟମେରୀ ବାଳିକା ବିଦ୍ୟାଳୟ"ରୁ ଯେଉଁ ଝିଅମାନେ ଫେଲ୍ ହୋଇ ଯାଉଥିଲେ ସେମାନେ ଟି.ସି. ଆଣି ଏହି ସ୍କୁଲରେ ଆଡମିସନ ନେଉଥିଲେ। ଏମିତି କ୍ରମେ କ୍ରମେ ସ୍କୁଲରେ

ଛାତ୍ରୀସଂଖ୍ୟା ବଢ଼ିଲା ଏବଂ ଶିକ୍ଷକ, ଶିକ୍ଷୟିତ୍ରୀମାନଙ୍କର ବ୍ୟକ୍ତିଗତ ପରିଶ୍ରମ ଫଳରେ ଛାତ୍ରୀମାନଙ୍କର ପାସ୍ ହାର ମଧ୍ୟ ବୃଦ୍ଧି ପାଇଲା। ସ୍କୁଲର ଦୁଃସ୍ଥିତି ସମୟରେ ଆମେ ଶିକ୍ଷୟିତ୍ରୀମାନେ ଜୀବନ ଜୀବିକାକୁ ନେଇ ବହୁତ ଚିନ୍ତିତ ଥିଲୁ। ଆମ ଭିତରୁ ଦୁଇଜଣ ସି.ଟି. ଟ୍ରେନିଂ ନେଇଥିଲେ। ସେମାନେ ଚେଷ୍ଟା କରି ସରକାରୀ ସ୍କୁଲକୁ ଚାଲିଗଲେ। 'ସ୍କୁଲ ବଞ୍ଚିଲେ ଆମେ ବଞ୍ଚିବା" ଏଇ ଭାବନାରେ ଆମେ ଯେତେ ଜଣ ରହିଲୁ ସ୍କୁଲର ରେଜଲ୍ଟ ଉପରେ ଗୁରୁତ୍ୱ ଦେଇଥିଲୁ। ବେଳେବେଳେ ହତାଶ ହୋଇ କେଉଁଝର ଆସି ମା' ତାରିଣୀଙ୍କ ଶରଣ ପଶିଥିଲୁ। ପିଲାମାନଙ୍କ ଭିତରେ ଉତ୍ସାହ, ଆଗ୍ରହ ଓ ଲୋକମାନଙ୍କ ଭିତରେ ସଚେତନତା ସୃଷ୍ଟି କରିବା ପାଇଁ ସ୍କୁଲରେ ବାର୍ଷିକ ଉତ୍ସବ, କ୍ରୀଡ଼ା ପ୍ରତିଯୋଗିତା, ପୁରସ୍କାର ବିତରଣ ଉତ୍ସବ ଇତ୍ୟାଦି ଉତ୍ସବମାନ ଅନୁଷ୍ଠିତ ହେଲା। ସାଂସ୍କୃତିକ କାର୍ଯ୍ୟକ୍ରମରେ ଗୀତିନାଟ୍ୟ, ନାଟକ ଇତ୍ୟାଦି ଝିଅମାନଙ୍କ ଦ୍ୱାରା ମଞ୍ଚସ୍ଥ ହେଲା। ଯେହେତୁ ସୀମାନ୍ତ ଅଞ୍ଚଳ,ଝିଅମାନେ ଓଡ଼ିଆ ଭାଷାକୁ ଠିକ୍ ଭାବରେ ଉଚ୍ଚାରଣ କରି ପାରୁ ନଥିଲେ। ତଥାପି ମରୁଭୂମିରେ ଗବଗଛ ମହାଦ୍ରୁମ ସାଜିଲା ଭଳି ମୁଁ ଏବଂ ମୋର ସହ ଶିକ୍ଷୟିତ୍ରୀ ୰ଗୋପେଶ୍ୱରୀ ମହାନ୍ତିର ଅକ୍ଳାନ୍ତ ପରିଶ୍ରମରେ ଝିଅମାନେ 'ଝଡ଼ ଝଞ୍ଜା ଝାମେଲା' ନାଟକ ଓ ବୈଷ୍ଣବ ପାଣିଙ୍କ ବିରଚିତ 'ପ୍ରହ୍ଲାଦ ଚରିତ' ଗୀତିନାଟ୍ୟର ସଫଳ ଅଭିନୟ କରି ପାରିଥିଲେ। ଆଦିବାସୀ ଝିଅମାନେ କେମିତି ଗୀତିନାଟ୍ୟ ଓ ନାଟକର ଅଭିନୟ କରୁଛନ୍ତି ଦେଖିବା ପାଇଁ ଅତିଥିମାନେ (ତତ୍କାଳୀନ ସୁନ୍ଦରଗଡ଼ ଜିଲ୍ଲାପାଳ ଓ ସର୍କଲ ଇନ୍ସପେକ୍ଟର) ସଭା ଶେଷ କରି ଅପେକ୍ଷା କରିଥିଲେ ଓ ଅଭିନୟର ଉଚ୍ଚ ପ୍ରଶଂସା ମଧ୍ୟ କରିଥିଲେ। ଧୀରେ ଧୀରେ ସ୍କୁଲର ସୁନାମ ବଢ଼ିଲା। ସରକାରୀ ଅନୁଦାନ ମିଳିଲା। ପାଚେରୀ ତିଆରି ହେଲା। ସ୍କୁଲଟି ବୋର୍ଡ଼ ପରୀକ୍ଷାର କେନ୍ଦ୍ର ହେଲା। ଡେରିରେ ହେଉ ବରଂ ମା' ତାରିଣୀ ଦୁଃଖ ଶୁଣିଲେ। ୧୯୯୪ ମସିହାରେ ସ୍କୁଲଟି ସରକାରଙ୍କ ହାତକୁ ଗଲା।

ସ୍କୁଲରେ ଆମେ ଯେଉଁ ସାତ ଆଠ ଜଣ ଶିକ୍ଷୟିତ୍ରୀ ଥିଲୁ ସେତେବେଳେ ସମସ୍ତେ ଥିଲେ ଅବିବାହିତା। ୨୩/୨୪ ବର୍ଷର ଅନୂଢ଼ା ଯୁବତୀ। ଗାଁଟିର ରାସ୍ତାଘାଟ, ବୃକ୍ଷଲତା ଓ ତା'ର ଶାଗୁଆ ବଣ ବିଷୟରେ ଆଗରୁ ସୂଚନା ଦେଇଛି। ଅତି ମନୋରମ ତା'ର ପ୍ରାକୃତିକ ପରିବେଶ। ସ୍କୁଲ ଛୁଟି ହେଲା ପରେ ଆମ୍ଭମାନଙ୍କର ଆଉ କିଛି କାମ ନଥାଏ। ତେଣୁ ସମସ୍ତେ ସାଙ୍ଗ ହୋଇ ଅଦୂରରେ ଥିବା ଛୋଟ ଝରଣା କୂଳକୁ ଚାଲି ଯାଉଥିଲୁ। ଝରଣାଟିକୁ ସେମାନେ 'ଯୋର' ବୋଲି କହୁଥିଲେ। 'ଯୋର' କୁ ଯିବା ରାସ୍ତାର ଦୁଇକଡ଼ରେ ଥିବା ଧାଡ଼ି ଧାଡ଼ି ଶାଳ, ମହୁଲଗଛ ଉପରେ ଡାଆଣିଆ

ଖରାର ଛାଉଣି, ରାସ୍ତାର ବୁକୁ ଉପରେ ଗୋଠ ବାହୁଡ଼ା ଗୋରୁ ମଇଁଷି ପଲ ଓ କ୍ଷେତରୁ ଫେରୁଥିବା ଉଷତଚିତ୍ତ ଶ୍ରମଜୀବୀମାନଙ୍କୁ ଅତିକ୍ରମ କରି ଆମେ ଯାଇ ବସୁଥିଲୁ ଯୋର କୂଳରେ ଥିବା ପ୍ରଶସ୍ତ ପଥର ଚଟାଣ ଉପରେ। କୂଳରେ ଥିବା ଛୋଟ ବଡ଼ ପଥର ଶଯ୍ୟା ଉପରେ ଝରଣାର ସଂକୀର୍ଣ୍ଣ ଧାରଟି କୁଲୁକୁଲୁ ନାଦରେ ଦୂରକୁ ବହି ଯାଉଥାଏ। ସେଇଠି ଆମର ଆସର ଜମେ। କେତେଆଡୁ କେତେ କଥା ପଡ଼େ। ନିଜ ନିଜର ଜୀବନ କଥା ଓ ପାରିବାରିକ ସମସ୍ୟା ଇତ୍ୟାଦି ବିଷୟରେ ଆଲୋଚନା ହୁଏ। ଯେତେବେଳେ ସ୍କୁଲର ଭବିଷ୍ୟତ ବିଷୟରେ କଥାପଡ଼େ ଆମ ଭିତରୁ ଦୁଇ ଜଣ ପରିହାସରେ କହୁଥିଲେ "ବତ୍‌କାମା, ବତ୍‌କାମା ୟାକୁବ୍ ଅଲ୍ଲୀକେ" ଅର୍ଥାତ୍ ୟାକୁବ୍ ଅଲ୍ଲୀଙ୍କୁ ଦଉଡ଼ାଇବା। ସେ ଦୁଇ ଜଣ ଥିଲେ ଆଦିବାସୀ ଝିଅ। ଶ୍ରୀମତୀ ରୋଜାଲିନ୍ ବାର୍ଲା ଓ ଶ୍ରୀମତୀ ମାର୍ଗାରେଟ୍ ଲାକ୍ରା। ତାଙ୍କ ଭାଷା ପ୍ରଥମେ ପ୍ରଥମେ ମୁଁ କିଛି ବୁଝି ପାରୁ ନଥିଲି। ପରେ ଭାଷା ବୁଝିବାରେ ଅଭ୍ୟସ୍ତ ହୋଇଗଲି। କ୍ରୀଡ଼ା ପ୍ରତିଯୋଗିତା ବେଳେ ଦୌଡ଼ରେ ଭାଗ ନେଇଥିବା ପ୍ରତିଯୋଗୀମାନଙ୍କୁ ସେମାନେ "ବତକ୍" "ବତକ୍" (ଦୌଡ଼, ଦୌଡ଼) କହି ଉତ୍ସାହିତ କରୁଥିଲେ। ୟାକୁବ୍ ଅଲ୍ଲୀଙ୍କ ପୁରାନାମ ଥିଲା ମହମ୍ମଦ ୟାକୁବ୍ ଅଲ୍ଲୀ। ସେ ମହାଶୟ "ବାଲିଶଙ୍କରା" ବ୍ଲକର ପୂର୍ବତନ ଚେୟାରମ୍ୟାନ୍ ଥିଲେ ଓ ସ୍କୁଲ ମ୍ୟାନେଜିଂ କମିଟିର ସେ ଥିଲେ ପ୍ରେସିଡେଣ୍ଟ। ରାଜଧାନୀ ଭୁବନେଶ୍ୱରରେ ସରକାରୀ ସ୍ତରରେ ସେ ଖୁବ୍ ଜଣାଶୁଣା ଥିଲେ। ତାଙ୍କରି ପ୍ରଚେଷ୍ଟାରେ ହିଁ ସ୍କୁଲଟି ଗଢ଼ି ଉଠିଥିଲା।

କ୍ରମେ ଶିକ୍ଷୟିତ୍ରୀମାନେ ସଂସାର ଡୋରରେ ବାନ୍ଧି ହେଲେ। ସଂସାର ବଢ଼ିଲା। ସମସ୍ତେ ମାତୃତ୍ୱର ସ୍ୱାଦ ଚାଖିଲେ। ସେଇଠି ତାଙ୍କର ପିଲାମାନେ ବଡ଼ ହେଲେ। ସେଇ ବନ୍ଧବାହାଲ ପ୍ରାଥମିକ ବିଦ୍ୟାଳୟରେ ପିଲାମାନଙ୍କର ମୂଳଦୁଆ ତିଆରି ହେଲା।

ମନେପଡୁଛି ସାକ୍ଷରତା ଅଭିଯାନରେ ସେଠିକାର ଶିଶୁ କଳିକାମାନଙ୍କର ଗୀତ-

"ପାଠ୍ ପଢ଼ିକ୍ ଚଲ୍‌ରେ ଭାଇ ପାଠ୍ ପଢ଼ିକ୍ ଚଲ୍
ପାଠ୍ ନି ପଢ଼୍‌ଲେ ମୂରୁଖ୍ ହେବୁ ପାଏବୁ ତାହାର୍ ଫଲ୍
ଅପାଠୁଆ ବଗା ବଲି ବଲ୍‌ବେ ଠକେ ସଭେ
ସଭା ସମିତି ଗାଆଁଥି ହେଲେ ନି ପଚାର୍‌ବେ କେଭେ।"

ଗାଆଁ ଦାଣ୍ଡରେ ଶିକ୍ଷା ଆଲୋକର ପ୍ରତୀକ, ପତାକା ହାତରେ କୁନି କୁନି କଳିକାମାନଙ୍କର ଲମ୍ବା ଧାଡ଼ି ଓ ତାଙ୍କ କଣ୍ଠରେ ଜାଗୃତି ସଙ୍ଗୀତ ଭାରି ଭଲ ଲାଗୁଥିଲା।

ମନେ ହେଉଥିଲା ଘରେ ଘରେ ଶିକ୍ଷାର ପ୍ରଦୀପ ଜାଳି ଦେବା ପାଇଁ ଯେମିତି ସେମାନେ ଥିଲେ ପ୍ରତିଜ୍ଞାବଦ୍ଧ ବାନରସେନା।

ବନ୍ଧବାହାଲରେ ଜୀବନଯାତ୍ରା ମୋ ପାଇଁ କିଛି ସହଜ ନଥିଲା। ସ୍କୁଲର ଅନ୍ୟ ଶିକ୍ଷୟିତ୍ରୀମାନେ ଥିଲେ ସୁନ୍ଦରଗଡ଼ ସଦର ଓ ତା'ର ଆଖପାଖ ଅଞ୍ଚଳର। କେବଳ ମୁଁ ହିଁ ଏକମାତ୍ର ଥିଲି ତିନୋଟି (କଟକ, ଢେଙ୍କାନାଳ, ସମ୍ବଲପୁର) ଜିଲ୍ଲାପାରିର ଯାତ୍ରୀ। ଅବିବାହିତା ଜୀବନରେ ସାଙ୍ଗସାଥୀ ମେଳରେ ପ୍ରଥମେ ରହିଯାଇଥିଲି ସିନା, ପରେ କିନ୍ତୁ ବହୁତ କଷ୍ଟ ସହିବାକୁ ପଡ଼ିଥିଲା। ଦୁଇଟି ଛୋଟ ପିଲାଙ୍କୁ ଧରି ଭୁବନେଶ୍ୱରରୁ ରାତି ବସ୍‌ରେ ଅନିଦ୍ରା ହୋଇ ବନ୍ଧବାହାଲରେ ଯାଇ ପହଞ୍ଚିବା ଅତି ଦୁରୂହ ବ୍ୟାପାର ଥିଲା। ଏମିତି ହୋଇଛି ରାତିରେ ବସ୍‌ରେ ଆସିଲା ବେଳେ ଥରେ ମୋର ଛୋଟ ପୁଅଟି ମୋ କୋଳରୁ ଖସି ଯାଇ କେତେବେଳେ ଗୋଡ଼ ତଳେ ପଡ଼ି ଯାଇଥିଲା, ନିଦରେ ମୁଁ ଜାଣି ପାରି ନଥିଲି। ହଠାତ୍ ନିଦ ଭାଙ୍ଗି ଯିବାରୁ କୋଳରେ ପୁଅ ନାହିଁ ଦେଖି ଛାତିରେ ଛନକା ପଶି ଯାଇଥିଲା। ସିଟ୍ ତଳ ଉଣ୍ଡାଳି ଗୋଡ଼ ତଳୁ ତାକୁ କୋଳକୁ ଉଠାଇ ଆଣିଥିଲି।

ଜଣେ ବଦାନ୍ୟ ବ୍ୟକ୍ତି ଯେ କି ସ୍କୁଲର ଥିଲେ ପ୍ରାଣ ପ୍ରତିଷ୍ଠାତା (ଵଜୟତରାମ କାଲୋ), ତାଙ୍କ କଥା ମୁଁ ଆଗରୁ ସ୍ମୃତିକଥା (ଯାହା ହଜାଇ ଦେଇଛି ଥରେ)ରେ କହିଛି। ସେ ଥିଲେ ସେ ଗାଁର ଗଉଁଟିଆ। ସ୍କୁଲର ସମସ୍ତ ଶିକ୍ଷୟିତ୍ରୀ (୮ ଜଣ)ଙ୍କ ପାଇଁ ସେ ତାଙ୍କ ନିଜ ଘରେ ରହିବାର ବ୍ୟବସ୍ଥା କରିଥିଲେ। ପ୍ରତ୍ୟେକଙ୍କ ପାଇଁ ଆଗପଛ ବାରଣ୍ଡା ସଂଲଗ୍ନ ଗୋଟିଏ ଗୋଟିଏ ସ୍ୱତନ୍ତ୍ର ରୁମ୍ ଥିଲା। ଘରର ପଛ ବାରଣ୍ଡାକୁ ଆବଦ୍ଧ କରାଯାଇ ରୋଷେଇ ପାଇଁ ବ୍ୟବସ୍ଥା ହୋଇଥିଲା। ଆଲୋକ ଓ ବାୟୁ ଚଳାଚଳ ପାଇଁ ପ୍ରତି ବାରଣ୍ଡାରେ ଥିଲା ଗୋଟିଏ ଗୋଟିଏ ବଡ଼ ଝରକା। ଝରକାରେ କବାଟ ନଥିଲା ମାତ୍ର ବଡ଼ ବଡ଼ କାଠ ରଡ୍ ଫ୍ରେମ୍‌ରେ ଫିଟ୍ କରାଯାଇଥିଲା। ରୋଷେଇ ଜାଗାରେ ବସିଲେ ଗାଁର ରାଜରାସ୍ତା, ରାସ୍ତା ଉପରେ କିଏ ଗଲା, କିଏ ଆଇଲା ସବୁ ଦିଶେ। ପୁଣି ଝରକା ସମ୍ମୁଖରେ ଥିଲା ବଡ଼ ଏକ ସିମେଣ୍ଟ ଚାନ୍ଦିନୀ ଯାହା ଉପରେ ଛୋଟ ପିଲାମାନେ ଖେଳନ୍ତି, ବସ୍‌ରେ ଯିବା ପାଇଁ ଯାତ୍ରୀମାନେ ମଧ୍ୟ ଅପେକ୍ଷା କରନ୍ତି। ଏସବୁ ଦୃଶ୍ୟ ଝରକାରେ ପରିଷ୍କାର ଦିଶେ। ଚୁଲିମୁଣ୍ଡରେ ବସି ସେଇଠି ମୁଁ ରାନ୍ଧୁଥିଲି। ପିଲା ଦୁଇଜଣଙ୍କୁ ପଢ଼ାଉଥିଲି, ପରିବା କାଟୁଥିଲି। ସେଇଠି ଥିଲା ଜାଳେଣି କାଠର ଛୋଟ ଭାଡ଼ିଟିଏ, ପୁଣି ବାସନ ମାଜିବା ଓ ବାଟଣ ବାଟିବା ପାଇଁ ବ୍ୟବସ୍ଥା।

ପିଲାମାନଙ୍କର ବାପା ଯେବେ ଯାଉଥିଲେ, ସେ ମଧ୍ୟ ସେଇ ଚୁଲି ପାଖରେ ବସି ଚା' ପିଉଥିଲେ ଏବଂ ପିଲାମାନଙ୍କ ସାଙ୍ଗରେ କଥାବାର୍ତ୍ତା କରୁଥିଲେ। ସେଇଠି ବସି ଆମେ ୪ଜଣ ଭାତ ଖାଉଥିଲୁ। ମୋଟ ଉପରେ ଆମ ୪ଜଣଙ୍କର ସମସ୍ତ କାମ ସେ ଚୁଲିମୁଣ୍ଡ ଜାଗାରେ ହିଁ ଚଳି ଯାଉଥିଲା। ମୁଖ୍ୟ ଘରଟି କେବଳ ଶୋଇବା ପାଇଁ ବ୍ୟବହାର ହେଉଥିଲା। ଅନୁଭବ କରୁଥିଲି ଶିଶୁ ସାହିତ୍ୟିକ କବି ନନ୍ଦ କିଶୋର ସାମଲଙ୍କ ଲେଖାକୁ।

"ଏଇଠି ଆମର ରୋଷେଇ ଘର
ଘର ଭିତରଟି ଭାରି ସୁତର
ଏଇଠି ମୋ ମାଆ ପରିବା କାଟେ, ବେସର ବାଟେ
ଜାଇ ରଗଡ଼େ, ଶାଗ ଖରଡ଼େ,
ଗଢ଼ଇ ପିଠା
ଆରିଷା କାକରା ଆହା କି ମିଠା।"

ଆଜି କିନ୍ତୁ ସହରୀ ଜୀବନରେ ରୁଚି ଭିନ୍ନ। ଏଠି ରୋଷେଇ ଘର ଅଲଗା, ପଢ଼ିବା ଘର ଅଲଗା, ବସିବା ଘର ଅଲଗା, ଶୋଇବା ଘର ଅଲଗା, ଅଳ୍ପରେ ସନ୍ତୁଷ୍ଟ ହେବାର ମାନସିକତାକୁ ମଣିଷ ଆଜି ଭୁଲି ଯାଇଛି। ମନେପଡୁଛି ଋଷି ଟଲଷ୍ଟୟଙ୍କର ଅମର କାହାଣୀ। "How much land does a man need ?" କେଡ଼େ ନିରାଟ ସତ୍ୟ ସେ ମଣିଷ ଆଗରେ ଖୋଲି ଦେଇଛନ୍ତି ସତେ ! ପ୍ରକୃତରେ ମଣିଷ ତା' ନିଜ ଶରୀର ପାଇଁ କେତେ ଜାଗା ଆବଶ୍ୟକ କରେ ?

ଚାହୁଁ ଚାହୁଁ ୨୫ଟି ବର୍ଷ ଗଡ଼ିଗଲା। ପ୍ରାଥମିକ ଶିକ୍ଷା ଶେଷ କରି ମୋର ପିଲା ଦୁଇଜଣ ଭୁବନେଶ୍ୱର ଚାଲି ଆସିଥିଲେ। ମୁଁ ସେଠି ଏକା ରହୁଥିଲି। ହଷ୍ଟେଲରେ ରହୁଥିବା ଆଦିବାସୀ ଝିଅମାନେ ବେଳେବେଳେ ପାଠ ବୁଝିବା ପାଇଁ ଘରକୁ ଆସନ୍ତି, ଘର ଓଳାଇଦେବା, ପାଣି ଆଣିଦେବା ଇତ୍ୟାଦି କାମ କରି ଦିଅନ୍ତି। ଭାରି ସରଳ ପ୍ରକୃତି ସେମାନଙ୍କର। ରାଜଗାଙ୍ଗପୁରର ଗୋଟିଏ ଝିଅ ସୋଭନ ତିର୍କୀ ମୋ ପାଇଁ ପଥରର ଶିଳପୁଆଟିଏ ଆଣି ଦେଇଥିଲା। ତାହା ମୁଁ ଏ ପର୍ଯ୍ୟନ୍ତ ବ୍ୟବହାର କରୁଛି। ପ୍ରୀଭା କୁଜୁର ବୋଲି ଝିଅଟି ମୋତେ ସବୁବେଳେ ପାଠ ପଚାରୁଥିଲା। ଶୁଣିଥିଲି ସେ ରାଉରକେଲା ଆଇ.ଜି.ଏଚ୍. ହସ୍ପିଟାଲରେ ନର୍ସିଂ ଟ୍ରେନିଂ ନେଉଥିଲା। ସେମାନଙ୍କର ମଙ୍ଗଳ କାମନା କରୁଛି। ସହକର୍ମୀମାନଙ୍କ ସହିତ ମୋର ଅତି ମଧୁର ସମ୍ପର୍କ ଥିଲା।

ସେମାନେ ମୋତେ କହୁଥିଲେ, "ଦିଦି, ପ୍ରମୋଶନ ହେଲେ ଆପଣ ଯେଉଁ ସ୍କୁଲକୁ ପ୍ରଧାନ ଶିକ୍ଷୟିତ୍ରୀ ହୋଇଯିବେ, ଆମେ ଚେଷ୍ଟା କରି ସେହି ସ୍କୁଲକୁ ବଦଳି ହୋଇଯିବୁ।" ନିୟତିର ନିୟମ ଥିଲା ଅଲଗା। ବଦଳି ସେମାନଙ୍କର ନୁହେଁ, ମୋର ହିଁ ହେଲା। ୧୯୯୮ ମସିହାରେ ମୋ ପିଲାମାନଙ୍କର ପିତୃ ବିୟୋଗ ଘଟିଲା। ମୁଁ ବନ୍ଧବାହାଲରୁ ବିଦାୟ ନେଇ 'ପ୍ରତାପ ଶାସନ ହାଇସ୍କୁଲ', ବାଲକାଟିରେ ଯୋଗଦେଲି। ବାଲକାଟିରେ ଶିକ୍ଷକ ଭାଇଭଉଣୀମାନେ ମୋତେ ଆଦରରେ ଆପଣେଇ ନେଲେ। ତାଙ୍କ ଗହଣରେ ୧୦ଟି ବର୍ଷ କଟାଇ ୨୦୦୮ରେ କର୍ମମୟ ଜୀବନରୁ ଅବସର ନେଲି।

ଆଜି ବନ୍ଧବାହାଲ ମୋ ପାଇଁ ଅପହଞ୍ଚ। ପ୍ରତାପ ଶାସନ ପାଖରେ ଥିଲେ ବି ଅପରିଚିତ। କାରଣ ସାଥୀମାନେ ସ୍କୁଲ ଛାଡ଼ି କିଏ କେଉଁଠି ରହିଲେଣି। କେହି କେହି ଭବମଞ୍ଚରୁ ମଧ୍ୟ ବିଦାୟ ନେଲେଣି। ବର୍ତ୍ତମାନ ମୁଁ ଜୀବନ ତାଳଗଛର ତଳ ବରଡ଼ା। ଦଲକାଏ ପବନ ଆସିଲେ ଖସି ପଡ଼ିବି। ଆଗରୁ ପ୍ରକାଶ ପାଇଥିବା ବହି ଦୁଇଖଣ୍ଡ (ଯାହା ହଜାଇ ଦେଇଛି ଥରେ ଓ ପେଡ଼ି ଆଳିମାଳିକା)ରେ ମୋର ପରିବାର ଓ ବାଲ୍ୟ ଜୀବନ ବିଷୟରେ କହିଛି। ଏହା ହେଉଛି ମୋର କର୍ମମୟ ଜୀବନର କଥା। ଭୁଲ ତ୍ରୁଟି ତ ଅନେକ ଅଛି। ପ୍ରିୟ ପାଠକ ବନ୍ଧୁମାନେ ତ୍ରୁଟି ମାର୍ଜନା କରିବାକୁ ଅନୁରୋଧ।



# ପ୍ରାର୍ଥନା

ଜୟ ଗୋବିନ୍ଦ ମୁକୁନ୍ଦ ମୁରାରି ଜୟ ଅନନ୍ତ ଅଚ୍ୟୁତ ଶ୍ରୀହରି ।
ଜୟ ଗୋପାଳ ଯଶୋଦା ନନ୍ଦନ ଜୟ ମାଧବ ଶ୍ରୀ ମଧୁସୂଦନ ।
ଜୟ ଦୟାନିଧି ଦୟାସାଗର ଜୟ ଦଇତାରି ଦୁଃଖୀ ସୋଦର ।
ଜୟ ଦୀନଜନ ପ୍ରାଣ ସଙ୍ଖାଳି ଜୟ ଗୋକୁଳାନନ୍ଦ ବନମାଳି ।
ଜୟ ବ୍ରଜବାଳୀ ହୃଦ ଚନ୍ଦନ ଜୟ ଶ୍ରୀପତି ଶ୍ରୀରାଧାମୋହନ ।
ଜୟ ରାମକୃଷ୍ଣ ଗୋପ ଆନନ୍ଦ ଜୟ ଶ୍ରୀକୃଷ୍ଣ ବୃନ୍ଦାବନ ଚାନ୍ଦ ।
ଜୟ ହୃଷୀକେଶ ନନ୍ଦଦୁଲ୍ଲାଳ ଜୟ କେଶବ ମଥୁରା ମଙ୍ଗଳ ।
ଜୟ ବାସୁଦେବ ବଂଶୀବଦନ ଜୟ କଂସାରି ଚାଣୁର ମର୍ଦ୍ଦନ ।
ଜୟ ନନ୍ଦନନ୍ଦନ ଗୋପୀନାଥ ଜୟ ଦୀନବନ୍ଧୁ ଅନାଥ ନାଥ ।
ଜୟ ଜଗବନ୍ଧୁ ଜଗଦୀଶ୍ୱର ଜୟ ପରମାତ୍ମା ପରମେଶ୍ୱର ।
ଜୟ ଜଗନ୍ନାଥ ଜଗତପତି ତବ ଚରଣରେ ଦିଅ ଭକତି ।
ଜୀବ ଯାଉ ତୁମ ଗୁଣ ସୁମରି ଏହି କୃପା ହେଉ ହେ ନରହରି ।



# ଗୁରୁ ପୂର୍ଣ୍ଣିମାରେ ଶ୍ରୀ ଗୁରୁଙ୍କୁ ନିବେଦନ

ଗୁରୁଦେବହେ ବାରେ କରୁଣାକର
ତୁମ ଦେଖାବାଟ ଦିଶଇ ଅସ୍ପଷ୍ଟ
ଅଜଣା ଭୟରେ ଚିତ୍ତ ଅସ୍ଥିର
ଗୁରୁଦେବହେ ବାରେ କରୁଣା କର ।୧।
ଯେତେ ବୁଝାଇଲେ ବୁଝେ ନାହିଁ ଜମା
ମୂଢ଼ ଅଜ୍ଞାନ ଏ ମନ ମୋହର
ଶଙ୍କା ଶୂନ୍ୟ ହୋଇ ଏକା ବସେ ନାହିଁ
ଜପେନାହିଁ ନାମ ହୋଇଣ ସ୍ଥିର
ଗୁରୁଦେବ ହେ ବାରେ କରୁଣା କର ।୨।
ତୁମେ ମାତାପିତା ତୁମେ ବନ୍ଧୁସଖା
ତୁମେ ଏ ଜୀବନେ ତାରଣ ହାର
ତୁମ କୃପା ହେଲେ ଆଲୋକିତ ହୁଏ
ଜନ୍ମ ଜନ୍ମାନ୍ତର ଅନ୍ଧାର ଘର
ଗୁରୁଦେବହେ ବାରେ କରୁଣା କର ।୩।
'ଶରଣଦ' ପଦେ ପଶିଛି ଶରଣ
ଦୃଢ଼ ଆଶା ଦୃଢ଼ ବିଶ୍ୱାସେ ମୋର
ଶରଣ ପଞ୍ଜର ନ କରିବ ପର
ପାରିକର ଧରି କରକୁ ମୋର
ଗୁରୁଦେବହେ ବାରେ କରୁଣା କର ।୪।

❑❑

# ଗୁରୁ ବନ୍ଦନା

ଯେଉଁ ନାମ ଧରି ଚାଲିବି ମୁଁ ବାଟ
ସେ ତ 'ଜୟଗୁରୁ' ନାମ
ଯେଉଁ ଦାଣ୍ଡ ଧୂଳି ବୋଳିବି ମଥାରେ
ସେ ତ ଶ୍ରୀଗୁରୁଙ୍କ ଧାମ।
ଯେଉଁ ପାଦ ତଳେ ଲୋଟିବ ମୋ ଶିର
ଶ୍ରୀଗୁରୁ ଚରଣ ସେହି
ଯେଉଁ ମନ୍ତ୍ର ମୋର ପ୍ରାଣର ସଙ୍ଗାଳି
ଗୁରୁଦତ୍ତ ମନ୍ତ୍ର ସେହି।
ହୃଦୟରେ ଯା'ର ମୂରତି ଥାପିବି
ସେ ଏକା ଗୁରୁ ମୂରତି
ଯେଉଁ ଶକତିରେ ହେବି ଶକ୍ତିମାନ
ସେ ଅଟେ ଗୁରୁ ଭକତି।
ଯା' ପାଶେ କହିବି ଅନ୍ତର ବେଦନା
କୃପାମୟ ସେହି ଗୁରୁ
ପୂରଣ କରନ୍ତି ଆକୁଳ ପ୍ରାର୍ଥନା
ସେ ତ ବାଞ୍ଛା କଳ୍ପତରୁ।
ବନ୍ଦଇ ଗୁରୁଙ୍କ ପାବନ ଚରଣ
ନୟନୁ ଲୋତକ ଢାଳି
କୃପା କଳ୍ପତରୁ ନାଶିବେ ଅନ୍ଧାର
ଜ୍ଞାନଦୀପ ହୃଦେ ଜାଳି।

(ରାଖୀ ପୂର୍ଣ୍ଣିମା ୨୦୨୧, ଶ୍ରୀଗୁରୁଦେବଙ୍କ ପୁଣ୍ୟ ଜନ୍ମତିଥିରେ)

ଘଘ

# ଗୁରୁ ଭଜ ନକରି ହେଳା

ଗୁରୁ ନାମ ଗୁରୁ ଧାମ ଗୁରୁ ପଦ୍ମପାଦ
ଭଜିଲେ ପାଇବୁ ମନ ପରମ ସମ୍ପଦ।
ଭଜି ନ ପାରିବୁ ଯଦି ଲୋଡ଼ିବୁ ସାନ୍ନିଧ
କରୁଣା ଦୃଷ୍ଟିରେ ଗୁରୁ ଖଣ୍ଡିବେ ପ୍ରମାଦ।
ଦୂର କରିଦେବେ ହେଳେ ଯେତେ ଭବ ବ୍ୟାଧି
କୃପା କଳ୍ପତରୁ ଗୁରୁ କରୁଣା ବାରିଧି।
ଗୁରୁଙ୍କ ବରଦ ହସ୍ତ ଅଛି ଯା'ର ଶିରେ
ତା'ର କାହିଁ ଡର ଭୟ ଏ ଘୋର ସଂସାରେ।
ଦୃଢ଼ ବିଶ୍ୱାସରେ ମନ ଚିନ୍ତ ନିରନ୍ତର
ମିଳିବ ପରମ ଗତି ହୋଇବୁ ଉଦ୍ଧାର।
ଗୁରୁ ଦେହେ ବସିଛନ୍ତି ନିଜେ ନାରାୟଣ
ଗୁରୁ ବାକ୍ୟ ମହାମନ୍ତ୍ର ପରମ କାରଣ।
କାମନା ବାସନା ଦେଇ ଗୁରୁ ପଦେ ଢାଳି
ଗୁରୁ ଦତ୍ତ ମନ୍ତ୍ର କର ପ୍ରାଣର ସଞ୍ଜାଳି।
ଗୁରୁ ଭଜ ଗୁରୁ ଭଜ ନ କରିଣ ହେଳା
ନ ଭଜିଲେ ଭବ ଜଳେ ବୁଡ଼ିଯିବ ଭେଳା।

(ଶ୍ରାବଣ ପୂର୍ଣ୍ଣିମା, ଶ୍ରୀଗୁରୁଙ୍କ ଶୁଭ ଜନ୍ମଦିବସରେ)



# ହରିଭାଇଙ୍କୁ

କହି ଯାଇଅଛ ଗାଡ଼ି ଆଣି ମୋତେ
ନେଇଯିବ ତୁମ ଘରକୁ ଡାକି,
ସାଙ୍ଗହୋଇ କିଛିଦିନ କଟାଇବା
ମେଣ୍ଟିବ ଯେ ଆଶା ରହିଛି ବାକି।
ଆସିଲାନି ଗାଡ଼ି ଆସିଲନି ତୁମେ
ଆସିଲା ଦାରୁଣ ବାରତା ସତେ
ନ ପାହୁଣୁ ରାତି ଥରିଗଲା ଛାତି
ଶୁଣାଇଲେ 'ରାମଭାଇ' ପ୍ରଭାତେ।
ବଡ କ୍ରୂର କାଳ ଅତି ନିଦାରୁଣ
ଅଚାନକ ଉଭା ହୋଇଲା ଆସି
ଗଣପତିଙ୍କର ଜନ୍ମ ଉତ୍ସବରେ
ଗଣ ସେବକଙ୍କୁ ନେଲା ସେ ଡାକି।
ହରି ବଲ୍ଲଭ ସେ ହରିଙ୍କର ପ୍ରିୟ
ନିଜ ଭୁବନକୁ ନେଲେ ଫେରାଇ
ପଛରେ ରହିଲେ ସଂସାରୀ ବାନ୍ଧବ
ଗୁଣଗ୍ରାମ ଖାଲି ଝୁରିବା ପାଇଁ।
ଆଖିରେ ନାଚଇ ଶ୍ରୀକ୍ଷେତ୍ର ଧାମର
ଆନନ୍ଦ ବଜାର ନିରୋଳା କୋଣ
ପାଞ୍ଚଜଣ ମିଶି ପାଇଲେ ପ୍ରସାଦ
ଜୀବନେ ଅପୂର୍ବ ଥିଲା ସେ ଦିନ।
ଯେ ଦିନ ରାତିରେ ମୋ ଜୀର୍ଣ୍ଣ କୁଟୀରେ
ପଡ଼ିଥିଲା ତୁମ ସଶ୍ରଦ୍ଧ ପାଦ
ଅତୀତ ଜୀବନ କଥା ହେଉଥିଲେ
ଆଖିରେ କାହାରି ନଥିଲା ନିଦ।
ସାଇତି ରଖିଛି ସେ ସ୍ମୃତି ସମ୍ପଦ
ମୋ 'ଆଳିମାଳିକା ପେଡ଼ି' ରେ ଭରି
ଯାଇଥିଲେ ହଟି 'କରୋନା' ନିୟମ
ଦେଇଥାନ୍ତି ତୁମ ଶ୍ରୀହସ୍ତେ ବାଢ଼ି।
ଶରୀର ଆମର ଭିନ୍ନ ଭିନ୍ନ ସିନା
ମନଥିଲା ଏକ ଭାବରେ ଜଡ଼ି
ଭାଙ୍ଗିଗଲା ରାମ ହରିଙ୍କର ଯୋଡ଼ି
ଚାଲିଗଲ ଏକା ରାମଙ୍କୁ ଛାଡ଼ି।
ଦୂରଭାଷ ଯୋଗେ ଶୁଭିବନି ଆଉ
ସ୍ନେହବୋଳା ସେହି 'ସତିଆ' ଡାକ
ଯାଜପୁର ରୋଡ଼୍ ନେବ ନାହିଁ ଆଉ
ଅପେକ୍ଷା ରହିଲା ଜୀବନ ଯାକ।
ଆଗରୁ ଯାଇଛ ଯେଉଁ ମୂଲକକୁ
ଆମ ପାଇଁ ସେଠି ରଖିବ ସ୍ଥାନ
ପୁଉଣି ମିଶିବା ପୁଣି ସାଙ୍ଗହେବା
ତ୍ରିଭୁଜର ତିନିବାହୁ ସମାନ।

ଭକ୍ତି ଶ୍ରଦ୍ଧାଞ୍ଜଳି ଢାଳି ଦେଉଅଛି        ପବିତ୍ର ତୁମର ଆତ୍ମାକୁ ଭାଇ
ସାଦରେ ଘେନିବ ସାନ ଭଉଣୀର        ଅଜଣା ସେ ଦୂର ମୂଳକେ ଥାଇ।

(ପ୍ରିୟ ବନ୍ଧୁ ଓ ବିଶିଷ୍ଟ ପାଲାଗାୟକ ଶ୍ରୀ ହରିବଲ୍ଲଭ ଦାଶଙ୍କ ବିୟୋଗରେ)

ରାମ- କେନ୍ଦ୍ର ସାହିତ୍ୟ ଏକାଡ଼େମୀ ପୁରସ୍କାର ପ୍ରାପ୍ତ ସାହିତ୍ୟିକ ଡ. ରାମଚନ୍ଦ୍ର ନାୟକ, ହରିଭାଇଙ୍କର ପଢ଼ାସାଥୀ ଓ ଅନ୍ତରଙ୍ଗ ବନ୍ଧୁ।

ପାଞ୍ଚଜଣ (ରାମଚନ୍ଦ୍ର ନାୟକ ସସ୍ତ୍ରୀକ, ହରିବଲ୍ଲଭ ଦାଶ ସସ୍ତ୍ରୀକ ଓ ଲେଖିକା)



# ବାର୍ତ୍ତା (ସୁବାସଙ୍କୁ)

ସତ୍ୟକୁ ସଭିଏଁ ଜାଣିଥିଲେ ସୁଦ୍ଧା
ସମ୍ମୁଖୀନ ହେବା ଦୁରୂହ କଥା
ନିରାସକ୍ତ କରେ ଜ୍ଞାନୀ ଜନଙ୍କୁ ସେ
ଦିଅଇ ସଂସାରୀ ଜୀବନେ ବ୍ୟଥା ।
ଜନନୀ ଜନମ ଦାତ୍ରୀର ମମତା
ତୁଳିବାକୁ ସାଧ ନାହିଁ କାହାରି
ଜୀବନେ ମରଣେ ମନେରଖ ତାକୁ
ତା ପାଦେ ସଶ୍ରଦ୍ଧ ପ୍ରଣତି ଢାଳି ।
ଏ ଜନମେ ଯେତେ ବରଷ କଟିଛି
ବରାଭୟ ତା'ର ପଣତ ତଳେ
ମଙ୍ଗଳ ମନାସି ବିଭୁଙ୍କୁ ସୁମର
ତା' ମରତ ଲୀଳା ସରିବାବେଳେ ।
ଅପା ବୋଲି ଯଦି ଅନ୍ତର ମାନିଛି
ଏତିକି ବାରତା ଦେଉଛି କହି
ପ୍ରଭୁଙ୍କ ପାଦରେ ପ୍ରାର୍ଥନା କରୁଛି
ଅମର ଆତ୍ମାର ମଙ୍ଗଳ ପାଇଁ ।

( ଶ୍ରୀଯୁକ୍ତ ସୁବାସ ଚନ୍ଦ୍ର ପଟ୍ଟନାୟକଙ୍କ ମାତୃ ବିୟୋଗରେ ଲିଖିତ ।)

□□

# ଦେଖୁ ଦେଖୁ କେବା ସହୁ

କାହିଁ ଗଲ ତୁମେ ସନ୍ଥ କବି ଭୀମ କାହିଁ ତବ ଆର୍ଷବାଣୀ
ପ୍ରାଣୀଙ୍କ ଆରତ ଦେଖି ଦେଖି ଆଜି ସନ୍ତାପିତ ଏ ଧରଣୀ।
କରୁଣା ବିହୀନ 'କରୋନା' ଭୂତାଣୁ ଲୁଚିଛପି କରି ଆସି
ଟାଳିଦେଇ ସବୁ ବଳ ପରାକ୍ରମ ନେଉଛି ଜୀବନ ଶୋଷି।
ରୋଗୀଟିଏ ଯଦି ହସ୍ପିଟାଲ ଯାଏ ଚିକିତ୍ସା ବ୍ୟବସ୍ଥା ପାଇଁ
ତା' ବନ୍ଧୁ ବାନ୍ଧବ ସନ୍ତାନ ସନ୍ତତି ସଙ୍ଗେ କେହି ଯାଏ ନାହିଁ।
ଘରକୁ ଫେରିବ ଅବା ମଶାଣିକୁ କିଛି ତ ଜଣା ନଥାଏ
ଆତଙ୍କିତ ଚିତ୍ତେ ଉଚ୍ଛନ୍ନ ପରାଣେ ଘରୁ ସେ ବିଦାୟ ନିଏ।
ଉଡ଼ିଯାଏ ଯଦି ପ୍ରାଣ ପକ୍ଷୀ ତା'ର ଶରୀର ବୃକ୍ଷକୁ ଛାଡ଼ି
ଘରେ ରହିଯାନ୍ତି ବାନ୍ଧବ ସୋଦର ଆସେ ନାହିଁ ସେ ବାହୁଡ଼ି।
ରାଧା ଗୋବିନ୍ଦଙ୍କୁ ସାଧକ ଅଚ୍ୟୁତ ଜଣାଇଥିଲେ ଗୁହାରି
ଜୀବ ଯିବାବେଳେ ଆତ୍ମୀୟ ବାନ୍ଧବ ଥିବେ ଚଉପାଶେ ଘେରି।
ଆନନ୍ଦରେ ଜୀବ ଘଟ ଛାଡ଼ିଯିବ ମନରେ ନଥିବ ଖେଦ
ଏ ମହାମାରୀରେ ସବୁତ ଓଲଟା ନିରମମ ତା'ର ଫାନ୍ଦ।
ସଙ୍ଗରୁ ନିଃସଙ୍ଗ କରୁଛି ଏ ରୋଗ ମାୟାର ବନ୍ଧନ ଫେଇ
ଆସିବାରେ ଏକା ଯିବାବେଳେ ଏକା ସଙ୍ଗ ଖୋଜୁ କାହିଁପାଇଁ।
ଭସ୍ମାସୁର ଆଜି ମଣିଷ ସମାଜ ସୃଷ୍ଟିର ସେ ଶ୍ରେଷ୍ଠ ଜୀବ
ନିଜ ଧ୍ୱଂସ ନିଜ ହାତରେ ରଚୁଛି କିଏ ତାକୁ ଉଦ୍ଧାରିବ।
ଆସ ଭୀମଭୋଇ ଜଣାଅ ପ୍ରଭୁଙ୍କୁ ଜଗତ ଉଦ୍ଧାର ପାଇଁ
ଜଗତର ନାଥ ପ୍ରଭୁ ଜଗନ୍ନାଥ ବସେ ଦାରୁଭୂତ ହୋଇ।

(୨୦୨୦ ମସିହା ବର୍ଷଟି ଦେଶ ପାଇଁ ଥିଲା ସଙ୍କଟର ସମୟ। ମହାମାରୀ କରୋନା ଆତଙ୍କରେ ଜନଜୀବନ ଥିଲା ଅସ୍ତବ୍ୟସ୍ତ। ସେଇ ଆଧାରରେ ଲିଖିତ)



# ଫିକା ପାରବଣ

ଆସ ଆସ ସିଂହ ବାହିନୀ ମା, ମହିଷାମର୍ଦ୍ଦିନୀ
କୋଭିଡ଼ି ଅସୁର କବଳୁ ତ୍ରାହି କର ମେଦିନୀ।
ଦେବଗଣେ ଡାକୁ ନାହାନ୍ତି ଡାକେ ମଣିଷ ଜାତି
ତବ ଦିବ୍ୟ ପାଦ ପରଶେ ପାହୁ ବିପଦ ରାତି।
'କରୋନା' ନୁହେଁ ଏ ତୁମରି କାଳ କରାଳ ରୂପ
ସମ୍ବରଣ କର ଜନନୀ ଆଉ ନ ବହି କୋପ।
ଶରତ ଆକାଶେ ଚନ୍ଦ୍ରମା ଆଜି ଦିଶେ ମଳିନ
ତୋ ପୂଜା ମଣ୍ଡପ ଦିଶୁଛି ଜନ ମାନବ ଶୂନ୍ୟ।
ନବ ବସ୍ତ୍ର ପରିଧାନରେ ଆଜି ନ ବଳେ ମନ
ମଣ୍ଡା କାକରାରେ ନପୂରେ ପୁଣ୍ୟ ଦଶରା ଦିନ।
ଶୁଭ୍ର କାଶତଣ୍ଡି ହସୁନି ତୋର ଶୁଭାଗମନେ
ଶୁଭୁନି 'ବିଜୟା ପ୍ରଣାମ' ଉଲ୍ଲସିତ ପରାଣେ।
ଦିଶୁ ନାହିଁ ଶ୍ୟାମ, ଶଇଳ ଧାନ କ୍ଷେତ, ପ୍ରାନ୍ତର
ନ ଉଡ଼ାଏ ନୀଳ ପତାକା ମହୀ ଭୟେ କାତର।
କେତେ ଦେଖୁଥିବ ଜନନୀ ଆଉ ଜୀବ ଯାତନା
ଶତ ଅପରାଧ କଲେବି ମାଆ ଦିଅନ୍ତି କ୍ଷମା।
ହେଲେ କୁ ସନ୍ତାନ କୁ ମାତ ନାହିଁ ଶାସ୍ତ୍ର ବିଧାନେ
ସନ୍ତାନର ଦଣ୍ଡ ବିଧାନ ନାହିଁ ଜନନୀ ପ୍ରାଣେ।
କରୁଛି ତୋପାଦେ ଦୟିନୀ ମାତ ମଣିଷ ଜାତି
ଦୁର୍ଗତି ନାଶିନୀ ଘୁଞ୍ଚାଅ ମଣିଷର ଦୁର୍ଗତି।

('କୋଭିଡି-୧୯' ପାଇଁ 'ପାର୍ବଣ' ନିରାଡ଼ମ୍ବର ଥିଲା)



# କୋଭିଡ୍ ଓ କୁଆଁର ପୁନେଇ

କାହୁଁ ଅଇଲା ଏ କୋଭିଡି କାଳ ଭାଙ୍ଗିଦେଲା କୁନି କୁଆଁରୀ ମେଳ ।
ପୋଛିନେଇ ସବୁ ସୁଖ ସରାଗ ଆଙ୍କି ଦେଇଯାଏ ଦୁଃଖର ଦାଗ ।
ଜହ୍ନିଫୁଲ କୋଠି ଆଞ୍ଜୁଳି ଟେକା ସାଙ୍ଗସାଥୀ ବିନା ଲାଗଇ ଫିକା ।
ଚାନ୍ଦ ବନ୍ଦାପନା ସବୁତ ମନା ବିରସରେ ହସୁନାହିଁ ଜୋଛନା ।
ପଶ୍ଚିମ ଓଡ଼ିଶା ଗାଁ ଦାଣ୍ଡରେ 'ହୁମ' ଖେଳ ଖେଳି ହରସ ଭରେ ।
କୁମାରୀ କଣ୍ଠର ମଧୁ ମୂର୍ଚ୍ଛନା ପୋଛିଦିଏ ମନୁ ଦୁଃଖ ଯାତନା ।
କୁଆଁର ପୁନେଇ ବରଷେ ଥରେ କୁଆଁରୀ ପ୍ରାଣରେ ଆନନ୍ଦ ଢାଳେ ।
ଭଲା କୋଭିଡିର ଭଲା ନିୟମ ଜାଳି ଦେଲା ସବୁ କୁଆଁରୀ ମନ ।
କୁଆଁରୀ କଣ୍ଠର ମଧୁର ଧ୍ୱନି ଶୁଭୁନାହିଁ ଆଜି ପଡ଼ିଛି ତୁନି ।
ଗାଁ ଦାଣ୍ଡ ଆଜି ଦିଶଇ ପଦା 'କରୋନା' ଡୋରିରେ ସଭିଏଁ ବନ୍ଧା
ବଇକୁଣ୍ଠ ପୁର ମାୟା ବରଜି ବିରାଜିବେ ମର୍ତ୍ତ୍ୟ ମଣ୍ଡଳେ ଆଜି
ଆସୁଛନ୍ତି ମାତା ଜଗଜ୍ଜନନୀ କଲ୍ୟାଣମୟୀ ସେ ସିନ୍ଧୁ ନନ୍ଦିନୀ
ପୂର୍ଣ୍ଣ କରିଦେବେ ମନୋକାମନା ଭକ୍ତି ଭରେ କର ପଦ ବନ୍ଦନା ।
ଅଭାବ କଷଣ ହୋଇବ ଦୂର ଯୋଡ଼ିଦେବେ ମାତା ଭଙ୍ଗା ସଂସାର ।
ହସ ଖୁସି ପୁଣି ଆସିବ ଫେରି ଦିଅଗୋ ଜନନୀ ଆଶିଷ ବାରି ।

(କୋଭିଡ୍-୧୯ ଯୋଗୁ ସରକାରୀ କଟକଣା ସମୟରେ ଲିଖିତ)

❑❑

# କୋଭିଡ-୧ ୯

କାହିଁକି ବୋଲାଉ 'କରୋନା' ନାହିଁ କରୁଣା ତୋର
କି ଦୋଷ କଲାକି ମଣିଷ ପ୍ରାଣ ନାଶିଲୁ ତା'ର।
କିଏ ଦେଲା ତୋତେ ଘାତକ ଶକ୍ତି ଆରେ କୋଭିଡି
ଯା' ଆଶ୍ରୟେ ବଞ୍ଚି ରହିଲୁ ତାକୁ ଧରିଲୁ ଭିଡି।
ଅଦୃଶ୍ୟ ଭାବରେ ଆସୁ ତୁ ଦେହ ନଥାଏ ତୋର
ବେଳ ଉଣ୍ଡି ପଶୁ ଭିତରେ କରୁ କାୟା ବିସ୍ତାର।
ମାଡ଼ି ବସୁ ଶ୍ୱାସ ଯନ୍ତ୍ରକୁ ବଳ ବିକ୍ରମ ଦେଇ
ନିମିଷକେ ପ୍ରାଣ ବାୟୁକୁ ନେଉ ଦେହୁ ଛଡ଼ାଇ।
ଯାହାଠାରୁ ବର ପାଇଲା ପୂର୍ବେ ଭସ୍ମ ଅସୁର
ତା ଶିରରେ ହାତ ମାରିବା ପାଇଁ ହେଲା ତତ୍ପର।
ଭୟରେ ଧାଇଁଲେ ଶଙ୍କର ହୋଇ ଅଣ ଆୟତ
ଧାଇଁ ଧାଇଁ ଶେଷେ ବୈକୁଣ୍ଠେ ହେଲେ ଶରଣାଗତ।
ମାୟାଧରଙ୍କର ମାୟାକୁ ଭେଦି ପାରିଲା ନାହିଁ
ଜଳିଲା ଦାନବ ହସ୍ତକୁ ନିଜ ମସ୍ତକେ ଦେଇ।
ସେହି ପ୍ରକାରେ ତୁ ଆସିଛୁ ତୋର ଶରୀର ନାହିଁ
ଯିଏ ଦେବ ତୋତେ ଆଶ୍ରୟ ତାକୁ ମାରିବା ପାଇଁ।
ହାରିବୁ ଅସ୍ତିତ୍ୱ ସେ ରୂପେ ଦିନେ ଦୁଷ୍ଟ ଦୁର୍ମତି
ହାରିନାହିଁ ହାରିବ ନାହିଁ ସେ ଯେ ମଣିଷ ଜାତି।



# ପିଲାବେଳ

ଅତି ମନୋହର କାଳ ପିଲାବେଳ ଚାଣ୍ଡେ ଚାଲିଗଲା ଖସି
ଚାରୁଚିତ୍ର ପରି ଭାସିଉଠେ ନେତ୍ରେ ଭାବିଦେଲେ ଥରେ ବସି ।
ମନେ ପଡ଼ିଯାଏ ରଞ୍ଜା ରଞ୍ଜା ସଞ୍ଜେ ସାଙ୍ଗସାଥୀ ହୋଇ ମେଳ
ଯାଉଥିଲୁ ହାତେ ସଞ୍ଜବତି ଧରି ଗାଁ ଠାକୁରାଣୀ ମାଳ ।
ମନେପଡ଼େ ପୁଣି ଚଇତି ମାସର ନିର୍ମଳ ଜୋଛନା ରାତି
ଚଇତି ପବନେ ଭାସି ଆସୁଥିଲା ଚଇତି ଦେବୀଙ୍କ ଗୀତି ।
ଆହାର(ନଈ) କୂଳର ସଞ୍ଜ ସମୀରଣ ଘଞ୍ଚ ଆମ୍ବତୋଟା ମାଳ
ଭାଲୁକୁଣୀ ଓଷା, ଠିଆପୁଚି ପୁଣି "ଝୋଟ ମୋଡ଼ି ମୋଡ଼ି" ଖେଳ ।
ଅଶିଣ ମାସକୁ ଚାହିଁ ରହୁଥିଲୁ ଆସିବ ଦେବୀ ଯାତରା
ଆସିବେ ଜନନୀ ଘରେ ଘରେ ହେବ ଆରିଶା ମଣ୍ଡା କାକରା ।
ବସନ୍ତ ପଞ୍ଚମୀ ସରିଗଲା ପରେ ମାତାଙ୍କୁ ମଥାରେ ଧରି
ଘର ଘର ବୁଲି ଭିକ୍ଷା ମାଗୁଥିଲୁ ଚାଟଶାଳୀ ଗୀତ ବୋଲି ।
ମୁଦ୍ରା ଅବା ଶସ୍ୟ ଯାହା ମିଳୁଥିଲା ଗୁରୁଙ୍କୁ ଅରପି ଦେଇ
ଗୃହେ ଫେରୁଥିଲୁ ଆନନ୍ଦ ମନରେ ଗୁରୁ ଆଶୀର୍ବାଦ ପାଇ ।
କୁଆଁର ପୁନେଇ ରଜଦୋଳି ଖେଳ ନୟନରେ ନାଚି ଯାଏ
ଶକ୍ତିହୀନ ଜରା ଆକ୍ରାନ୍ତ ପ୍ରାଣକୁ ପୁଲକରେ ଭରିଦିଏ ।
କେଡ଼େ ସୁଖଦାୟୀ ପିଲାବେଳ ସତେ ଥିଲା ଚିନ୍ତା ଦକ ଶୂନ୍ୟ
ଉତ୍ତୀର୍ଣ୍ଣ ବୟସେ ଆନନ୍ଦ ଖୋଜିଲେ ମନେ ପକା ପିଲାଦିନ ।



# ସମତା

ସମ ଦୃଷ୍ଟି ସମ ଭାବକୁ ବହିଲେ ପ୍ରାଣୀ ହୁଏ ମହୀୟାନ
ମଣିଷ ମଧ୍ୟରେ ମହାପୁରୁଷ ସେ ଈଶ୍ୱରଙ୍କ ପ୍ରିୟଜନ ।
ସମତା ରଖିବା ନୁହଁଇ ସହଜ ଜଗତ ଯେଣୁ ବିଷମ
ମଣିଷ ଜାତିରେ ଶ୍ୱେତ ପୀତ କୃଷ୍ଣ ତିନି ପ୍ରକାର ଗଠନ ।
ଦୂରରୁ ବନାନୀ ହରଇ ନୟନ ଦେଖାଇ ଶାଗୁଆ ପଣ
ଭିତରକୁ ଗଲେ ସମାନ ନୁହଁଇ ବୃକ୍ଷ ଲତା ତରୁ ତୃଣ ।
କିଏ କୁଜା ପୁଣି କିଏ ସେ ସଳଖ କିଏ ପୁଣି ମହାମେରୁ
ଗୁଣକୁ ଖୋଜିଲେ ସମାନ ନୁହଁନ୍ତି ପିଆଶାଳ ଦେବଦାରୁ ।
ପ୍ରାଣୀ ଜଗତରେ ସମାନ ନୁହଁନ୍ତି ବାଘ ସିଂହ ସରୀସୃପ
ଗୁଣରେ ପ୍ରଭେଦ ରୂପରେ ପ୍ରଭେଦ କିଏ ଖାଦ୍ୟ କେ ଖାଦକ ।
ଜଗତରେ ସୂର୍ଯ୍ୟ ସମାନ ଭାବରେ ବାଣ୍ଟନ୍ତି ନାହିଁ କିରଣ
କେବେ ସାଜିଥାନ୍ତି ପ୍ରଚଣ୍ଡ ମାର୍ତ୍ତଣ୍ଡ କେବେ ପୁଣି ବିକର୍ତ୍ତନ ।
ନ ବହେ ପବନ ସମାନ ଭାବରେ ଆଠକାଳେ ବାରମାସେ
କେବେ ଭୟଙ୍କର ପ୍ରଭଞ୍ଜନ ପୁଣି ମନ୍ଦଗତି ମଧୁ ମାସେ ।
ନ ବରଷେ ମେଘ ସମାନ ଭାବରେ ପର୍ବତ, ମରୁଭୂମିରେ
ନ ଢାଳଇ ଚନ୍ଦ୍ର ଶୀତଳ ଜୋଛନା ଘୋର ଅମା ରଜନୀରେ ।
ସମତା ରଖେନା ନିଜ କାର୍ଯ୍ୟେ ପୁଣି ଏ ସୃଷ୍ଟିରେ ମହାଶକ୍ତି
କେବେ ସେ ରଚଇ କେବେ ସେ ନାଶଇ ଧରି ଭୟଙ୍କର ମୂର୍ତ୍ତି ।
ପାଳିଥାଏ ଜଣେ ସମତା ଧରମ ଏ ସଂସାରେ ମହିୟାନ
ଶମଶାନ ଭୂଇଁ ଅଟଇ ତା' ନାମ କରେ ମୁଁ ତାରେ ପ୍ରଣାମ ।
ଶବର ଶୟନ ଅଟେ ଶମଶାନ ସମଦୃଷ୍ଟି ସମଭାବ
ଗୁଣୀ ନିରିଗୁଣ ରାଜା କି ପରଜା ନାହିଁ ତା'ର ଭେଦଭାବ ।
ପୋଛି ଦେଇ ସବୁ ସମ ବିଷମକୁ ଆଦରେ ଧରଇ କୋଳେ
ଭୁଲି ଜୀବନର ଜଞ୍ଜାଳ ଯାତନା ଶୁଅଇ ଶବ ନିଷ୍ଫଳେ ।



# ବୟସ

ବୟସ ଶବ୍ଦଟି ପିଲାବୁଢ଼ା ପୁଣି

ଯୁବା ଅବସ୍ଥାରେ ହୋଇଛି ଯୋଡ଼ି

ଅବସ୍ଥା ବଦଳେ ବାଲ୍ୟରୁ ବାର୍ଦ୍ଧକ୍ୟ

'ବୟସ' କାହାକୁ ନପାରେ ଛାଡ଼ି।

ଛୋଟ ପିଲାଟିଏ ଅପରାଧ କଲେ

କହିଥାନ୍ତି ଲୋକେ ପିଲା ବୟସ

ବୁଦ୍ଧିଶୁଦ୍ଧି କିଛି ହୋଇନାହିଁ ତା'ର

କ୍ଷମା କରିଦିଅ ନଧରି ଦୋଷ।

ପଛରେ ପକାଇ ପିଲା ବୟସକୁ

କୈଶୋରରେ ଯେବେ ଥାପଇ ପାଦ

ଶୃଙ୍ଖଳା ଶୃଙ୍ଖଳେ ଛନ୍ଦି ହୋଇଯାଏ

ସରଳ ଶିଶୁର ସ୍ୱାଧୀନ ପାଦ।

ଅପରାଧ ଯେବେ କରି ବସେ କେବେ

ଶିକ୍ଷା ନିକେତନେ ଗୁରୁ ଗୃହରେ

କ୍ଷମାର ସାଗର କ୍ଷମାଦାତା ଗୁରୁ

ନଧରନ୍ତି ତା'ର ଦୋଷକୁ ତିଳେ।

ଉଦ୍ଦାମ ଯୌବନ ଛୁଇଁଲେ ଜୀବନ

କହିଥାନ୍ତି ଲୋକେ ଯୁବା ବୟସ

ଉଚ୍ଛୃଙ୍ଖଳ ହୋଇ ଅପରାଧୀ ହେଲେ

ଦେଇଥାନ୍ତି ସର୍ବେ ବୟସ ଦୋଷ।

ବହିଯାଏ କାଳ ହଟିଯାଏ ବଳ
ଲୁଚଇ ଯୌବନ ହଜାଇ ଦିଶା
ବୃଦ୍ଧ ବୟସରେ ଭାବିଲେକି ଆଉ
ଫେରି ଆସିଥାଏ ଯୌବନ ନିଶା ।

ଲାଳସାରେ ଯଦି ବୃଦ୍ଧ ବ୍ୟକ୍ତିଟିଏ
ଭଲମନ୍ଦ ଖାଦ୍ୟ କରେ ଗ୍ରହଣ
ବାରଣ କରନ୍ତି ଆତ୍ମୀୟ ସ୍ୱଜନ
ବୁଢ଼ା ବୟସରେ ହେବ ଅଜୀର୍ଣ୍ଣ ।

ରଙ୍ଗ ବେରଙ୍ଗର ରଞ୍ଜିତ ପୋଷାକ
ମନକୁ କାହାର ନପାରେ ଛୁଇଁ
ସଭିଏଁ କହନ୍ତି ଏମିତି ପୋଷାକ
ବୁଢ଼ା ବୟସକୁ ମାନିବ ନାହିଁ ।

କେଡ଼େ ସୁଖମୟ ଯୁବା ବୟସଟା
ଅସୀମ ଶକତି ଦେହରେ ସିନା
ଜନହିତ ପାଇଁ କାମ କରିଥିଲେ
ଜଗତେ ଉଡ଼ଇ କୀରତି ବାନା ।

ପିଲା ବୟସରୁ ମଞ୍ଜି ପୋତିଥିଲେ
ଯୁବା ବୟସରେ ଧରଇ ଫୁଲ
ବୃଦ୍ଧ ବୟସରେ ଫଳ ଚାଖି ଚାଖି
ବୁଝି ହୋଇଯାଏ ଜୀବନ ମୂଲ ।

ଗୁଣରେ ବୟସ ଦୋଷରେ ବୟସ
ସବୁ ଅବସ୍ଥାରେ ରହିଛି ଜଡ଼ି
ପିଲାରୁ ରହିଛି ବାର୍ଦ୍ଧକ୍ୟରେ ଥିବ
ଯିବନାହିଁ କେବେ ବ୍ୟକ୍ତିକୁ ଛାଡ଼ି ।

❑❑

# ନିରବତା

ପଢ଼ିଥିଲି କେବେ କାହାଣୀ  ଏବେ ପଡ଼ଇ ମନେ
ରହୁଥିଲେ ସଦା ଗୌତମ  ଶାକ୍ୟସିଂହ ମଉନେ।
ସଂସାର ବିରାଗ ଲକ୍ଷଣ  ବାଲ୍ୟ କାଳରୁ ଦେଖି
ପିତା ଶୁଦ୍ଧୋଦନ ଥାଆନ୍ତି  ମନେ ହୋଇଣ ଦୁଃଖୀ।
ନ ଖୋଲନ୍ତି ପାଟି କୁମାର  କଥା କହନ୍ତି ନାହିଁ
କେତେବେଳେ କଥା କହିବେ  ସର୍ବେ ଥାଆନ୍ତି ଚାହିଁ।
ବସିଥିଲେ ଦିନେ ଗୌତମ  ନିରବେ ତରୁତଳେ
ପକ୍ଷୀଟିଏ ଗୀତ ଗାଇଲା  ବସି ତରୁ ଡାଳରେ।
ଯୋଖିଦେଲା ଶର ନିଷାଦ  ଶୁଣି ପକ୍ଷୀର ରାବ
ତରୁତଳେ ଟଳି ପଡ଼ିଲା  ଗଲା ପକ୍ଷୀର ଜୀବ।
କହିଦେଲେ କଥା କୁମାର  ପକ୍ଷୀ ଦୁର୍ଦ୍ଦଶା ଦେଖି
'ପାଟି ତୁ କାହିଁକି ଖୋଲିଲୁ'  ଆରେ ନିଷ୍ପାପ ପକ୍ଷୀ।
ଚହଳ ପଡ଼ିଲା ନଅରେ  ଗଲା ସମ୍ବାଦ ରଟି
କଥା କହିଛନ୍ତି କୁମାର  ସର୍ବେ ଆସିଲେ ଛୁଟି।
ଧାଇଁଲେ ରାଜନ୍ୟ ମଣ୍ଡଳୀ  ସତ୍ୟ ଜାଣିବା ପାଇଁ
ନିରବ ରହିଲେ କୁମାର  ପାଟି ଖୋଲିଲେ ନାହିଁ।
କୋପଭରେ ହେଲେ ରାଜନ  କଲେ ଦଣ୍ଡ ବିଧାନ
ପ୍ରାଣ ଦଣ୍ଡ ଯୋଗ୍ୟ ଏହାକୁ  ବୋଲେ ମିଥ୍ୟା ବଚନ।
ପାଦ ତଳେ ପଡ଼ି ପ୍ରହରୀ  କାନ୍ଦି କଲା ଗୁହାରି
କହିନାହିଁ ମିଥ୍ୟା ବଚନ  ରଖ ପ୍ରାଣ ମୋହରି।

ସ୍ଫୁରିଲା ମୁଖରୁ ବଚନ ସତେ ଅମୃତ ମିଶା
ପାଟି ଖୋଲିବାରୁ ସିନା ତୋ ଆଜି ହେଲା ଏ ଦଶା ।
କଥା କହିବାର ଆଗରୁ ବାରେ କରିଲେ ଚିନ୍ତା
ପ୍ରମାଦ ନଥାଏ ତହିଁରେ ଏହା ମନେ ରଖିଥା ।
ନିରବତା ଦିଏ ଶକତି ମନ ପ୍ରାଣରେ ଭରି
ଜିଣିହୁଏ କ୍ରୋଧ ସହଜେ ନିରବତା ଆଚରି ।
ନିରବେ ବାଣ୍ଟଇ ପାଦପ ଫଳ ଶୀତଳ ଛାଇ
ନିରବରେ ଫୁଟେ କୁସୁମ ଉପବନରେ ଥାଇ ।
ନିରବେ ଗମନ କରନ୍ତି ନଭେ ଶଶୀ ସବିତା
ସାଧୁ ଜନଙ୍କର ଭୂଷଣ ଅଟଇ ନିରବତା ।
ନିରବରେ ଗଡ଼ି ଯାଉଛି ଆମ ଜୀବନ ଚକ
ନିରବରେ ଗତି କରୁଛି ଦେଖ ଶ୍ୱାସ ପ୍ରଶ୍ୱାସ ।
ନିରବେ ନିରେଖି ଜାଣିବା ଶ୍ୱାସ୍ ପ୍ରଶ୍ୱାସ ଗତି
ସେହି ସିନା ଆମ ଜୀବନ ଚକ ଶାଶ୍ୱତ ଗତି ।



# ବିଜ୍ଞାନର ବିପରୀତ କ୍ରିୟା

"ଶକ୍ତି ନାହିଁ ବସ୍ତ କାହାରି ଜଗତେ ନିୟତିକି ନେବ ନିଜ ଇଚ୍ଛାମତେ"।
ଧନ୍ୟ କବିବର ଧନ୍ୟ ତୁମ୍ଭ ବାଣୀ ହେଜି ନପାରଇ ଆଜିର ବିଜ୍ଞାନୀ।
ବିଜ୍ଞାନକୁ କରି ଅମୋଘ କୁଞ୍ଚିକା ଫେଡ଼ଇ ପ୍ରକୃତି ରହସ୍ୟ ପେଟିକା।
ଯେତେ ଖୋଲୁଥାଏ କୁହୁକ ଓଢ଼ଣୀ ଭିନ୍ନ ରଙ୍ଗେ ତାହା ପ୍ରକାଶଇ ପୁଣି।
ନ ସହେ ପ୍ରକୃତି ଦମ୍ଭ ଗର୍ବ କା'ର ନିମିଷକେ କରେ ସବୁ ନାରଖାର।
ଶିଖାଇଛି ମନ୍ତ୍ର ପାଶ୍ଚାତ୍ୟ ଜଗତ ଭୁଲିଛି ଭାରତ ନିଜ ସାମରଥ।
ଏ ଦେଶର 'ବେଦ' ଜ୍ଞାନର ଭଣ୍ଡାର ପୃଥିବୀରେ ନାହିଁ ତା'ର ପଟାନ୍ତର।
ଆଧାତ୍ମିକତାର ବୀଜ ଅଟେ ବେଦ ଭାରତ ସଂସ୍କୃତି ଭାରତ ସମ୍ପଦ।
ରଚିଗଲେ 'ମନୁ' ମାନବର ପିତା ଶାସ୍ତ୍ରରେ ବିଖ୍ୟାତ ସେ 'ମନୁସଂହିତା'।
ସମାଜ ଶୃଙ୍ଖଳା ସମାଜ ଗଠନ ସମାଜ ପାଇଁ ସେ ଅଟେ ସମ୍ବିଧାନ।
ସେ ନିୟମ ଆଜି ସମାଜେ ଅଚଳ ତେଣୁ ସମାଜର ସ୍ଥିତି ଟଳମଳ।
ଯାନ୍ତ୍ରିକ ବଳରେ ହୋଇ ବଳିୟାନ ପ୍ରକୃତି ନିୟମ ନମାନେ ବିଜ୍ଞାନ।
ବିଜ୍ଞାନ ଗରଳ ପିଉଛି ମଣିଷ କାହାନ୍ତି ପିନାକୀ ହରିବାକୁ ବିଷ।
ମଣିଷକୁ ଦେଇ ଆରାମ ସମ୍ଭୋଗ ଭୁଲାଇ ଦେଇଛି ତିତିକ୍ଷା ଓ ତ୍ୟାଗ।
'ଭୋଗ' ନୁହେଁ 'ତ୍ୟାଗ' ଏ ଦେଶ ସଂସ୍କୃତି ଶିଖାନ୍ତି ପାଦପ, ଚନ୍ଦ୍ର, ସୂର୍ଯ୍ୟ ନିତି।
ଜଳ ପ୍ରଦୂଷିତ ବାୟୁ ପ୍ରଦୂଷିତ ପ୍ରଦୂଷିତ ପୁଣି ଔଷଧ ଜଗତ।
ଯେ ଦେଶ ମାଟିର ବିଶଲ୍ୟକରଣୀ ଜୀବନ ଫେରାଏ ମୃତ୍ୟୁ ମୁଖୁ ପୁଣି।
ସେ ଦେଶରେ ଆଜି ଡ୍ରଗ ଷ୍ଟେରୋଏଡ ରୋଗକୁ ନମାରି ଯନ୍ତ୍ରଣାକୁ ମାରେ।
ରସାୟନ ସାର ପ୍ରୟୋଗ ଲକ୍ଷଣ ବଢ଼େ ଉତ୍ପାଦନ ବଢ଼େ ବହୁଗୁଣ।
ଖାଦ୍ୟ ନବହନ୍ତି ପ୍ରତିରୋଧ ଶକ୍ତି ଖାଇଲେ ନମିଳେ ରୋଗରୁ ମୁକତି।

ସରି ସରିଯାଏ ଜଙ୍ଗଲ ସମ୍ପଦ ପଶୁପକ୍ଷୀ ପ୍ରାଣେ ଜାତ ହୁଏ ଖେଦ ।
କୀଟ ନାଶକର ପ୍ରୟୋଗକୁ ଡରି ନଶୋଷେ ମଧୁପ ଫୁଲେ ଫୁଲେ ଉଡ଼ି ।
ପ୍ରକୃତିର ଅତି କମନୀୟ ରୂପ ପରଜାପତିର ବଂଶ ହୁଏ ଲୋପ ।
ହଜିଲେଣି କେତେ ବୃକ୍ଷଲତା ଜାତି ହଜିଲେଣି କୀଟ ପତଙ୍ଗ ପ୍ରଜାତି ।
ଛାଡ଼େ କାରଖାନା ଧୂଆଁ ଅହର୍ନିଶ ଭରିଯାଏ ବାୟୁ ମଣ୍ଡଳରେ ବିଷ ।
କମିଯାଏ ରୋଗ ପ୍ରତିରୋଧ ଶକ୍ତି ତା' ସଙ୍ଗେ ବଢ଼ଇ ରୋଗ ସଂଖ୍ୟା ନିତି ।
ନିଜ ହାତ ଗଢ଼ା ଯାନ୍ତ୍ରିକ ମଣିଷ (ରୋବଟ) ଭସ୍ମାସୁର ସାଜି କରିବ ବିନାଶ ।
ସତର୍କ ନହେଲେ ବେଳ ଥାଉ ଥାଉ ବହିଗଲେ କାଳ ନ ଫେରିବ ଆଉ ।
ବିଜ୍ଞାନର ଲକ୍ଷ୍ୟ ସତ୍ୟ ଅନ୍ୱେଷଣ ସେ କାହିଁ କରନ୍ତା ବିଷ ଉଦ୍‌ଗୀରଣ ।
ସବୁରି ମୂଳରେ ଏ ମଣିଷ ଜାତି ଭୁଲି ଯାଉଅଛି ନୀତି ଓ ଅନୀତି ।
ଲୋଭ ଭୋଗ ତେଜି ମାନବ କଲ୍ୟାଣ ସାଧନ ଦିଗରେ ବଳାଇଲେ ମନ ।
ଦେଖିବ ବିଜ୍ଞାନ ଅସୀମ ଶକତି ହସିବ ପୃଥିବୀ ବଞ୍ଚିବ ଏ ଜାତି ।



# ନିଃଶବ୍ଦ ଦୀପାବଳି

| | |
|---|---|
| ନିଶବଦେ ଆସ ଜନନୀ | କର ମହୀ ମଣ୍ଡନ |
| ନିଶବଦେ ପୋଛି ଦିଅ ମା' | ଧରା ଦୁଃଖ କଷଣ। |
| 'ନିରାତଙ୍କା' ନାମ ବହିଛ | କର ଆତଙ୍କ ଶୂନ୍ୟ |
| ଜୟ ହେଉ ତୁମ୍ଭ ନାମର | ହେଉ ମହିମା ଗାନ। |
| ନିଃଶବ୍ଦେ ଅନ୍ତରେ ରହିଛ | ମହାକାଳ ରୂପିଣୀ |
| ନିରବେ ନିଷ୍ଠଳେ ଖୋଜିଲେ | ଦେଖାଦିଅ ଜନନୀ। |
| ବାହ୍ୟ ଆଲୋକରେ ନଦିଶେ | ତୁମ୍ଭ ଶୁଦ୍ଧ ସ୍ୱରୂପ |
| ତୁମ୍ଭ କୃପାହେଲେ ଜଳିବ | ସିନା ଜ୍ଞାନ ପ୍ରଦୀପ। |
| ନଫୁଟିଲେ ପଛେ ନଫୁଟୁ | ବାଣ ଆତସ ବାଜି |
| ମାନବ ଅନ୍ତରୁ ନଯାଉ | ମାନବିକତା ହଜି। |
| ଜ୍ଞାନମୟୀ କରୁଣାମୟୀ | ତୁମେ ଜଗଜ୍ଜନନୀ |
| ବିଞ୍ଚି ଦିଅ କୃପା କଣିକା | ଧନ୍ୟ ହେଉ ମେଦିନୀ। |
| ଜଳି ଉଠୁ ଜ୍ଞାନ ଦିପାଳି | ଜନ ହୃଦ ମନ୍ଦିରେ |
| ଘୁଞ୍ଚିଯାଉ ସ୍ୱାର୍ଥ ଅନ୍ଧାର | ଜ୍ଞାନାଲୋକ ତେଜରେ। |
| ଜାଗିଉଠୁ ନର ଅନ୍ତରେ | ମାନବିକତା ଗୁଣ |
| ବାଜିଉଠୁ ହୃଦ ବୀଣାରେ | ସଦା ମଙ୍ଗଳ ଗାନ। |
| ତୁମେ ମହାଲକ୍ଷ୍ମୀ, ସାରଦା | ତୁମେ ମହା କାଳିକା |
| ନାରାୟଣୀ ଦୁଃଖ ହାରିଣୀ | ଧାତ୍ରୀ ବିଶ୍ୱ ପାଳିକା। |
| ନିଃଶବ୍ଦେ ବାଢୁଛି ପ୍ରଣାମ | ମାତ ତୋ ପାଦତଳେ |
| ଶୁଭ ସମ୍ବାଦିନୀ ହୁଅ ମା' | ବିଶ୍ୱ ବିପତ୍ତି ବେଳେ। |

(ମହାମାରୀ 'କରୋନା' ଯୋଗୁ ଦୀପାବଳିରେ ବାଣ ଫୁଟାଇବା ଉପରେ ସରକାରୀ କଟକଣା ଜାରି ହୋଇଥିଲା।)



# ଶୀତ ସକାଳ

ବାହୁଡ଼ି ଗଲାଣି ଶରତକାଳ
ଗଗନୁ ଗଲେଣି ଜଳଦମାଳ
କୁହୁଡ଼ି କାକର ସାଙ୍ଗରେ ଧରି
ମରତେ ଆସଇ ଶୀତ ଲହରୀ।
ପ୍ରଭାତ ବିହଙ୍ଗ କହି ଗଲାଣି
ଉଠ ଉଠ ପାହିଲାଣି ରଜନୀ
ଘଡ଼ିଏ ବିଳମ୍ବ କର ଅରୁଣ
ଶେଯ ଛାଡ଼ିବାକୁ ନହୁଏ ମନ।
ଦୁବ ଘାସେ ପଡ଼ି ଅଛି କାକର
କାକର ନୁହେଁ ସେ ଧଳା ଚାଦର।
ମନେହୁଏ ଯେହ୍ନେ ଧରଣୀ ରାଣୀ
ଢାଙ୍କିଛି ଶରୀର ଦେଇ ଓଢ଼ଣୀ।
ଧଳା ରଙ୍ଗେ ରଞ୍ଜି ନିଜର ତନୁ
ସ୍ୱାଗତ କରଇ ପ୍ରଭାତ ଭାନୁ।
ଠାବେ ଠାବେ ଧୂନି ଉଠଇ ଜଳି
ପିଲା ବୁଢ଼ା ସବୁ ହୁଅନ୍ତି ମେଳି।
ଅନଳକୁ ମଣି ସଲିଳ ପରି
ନିଆଁ ପୁଇଁଥାନ୍ତି ଆନନ୍ଦ ଭରି।
ଉତ୍ତର ଦିଗରୁ ପବନ ବହି
ଶୀତରେ ଶରୀର ଦିଏ ଥରାଇ।
ସଭିଙ୍କୁ କରାଏ କର୍ମ ବିମୁଖ
ତପନ କିରଣ ଲାଗଇ ସୁଖ।
କୃଷକ ଜୀବନ ବଡ଼ କଠୋର
ନମାନେ ବରଷା ଶୀତ କାକର।
ସକାଳୁ ସକାଳୁ କ୍ଷେତକୁ ଧାଏଁ
କ୍ଷେତରେ ଫସଲ ହସାଇ ଦିଏ।
କ୍ଷେତରେ ହସଇ ସୋରିଷ ଫୁଲ
ହଳଦି ଗଣ୍ଠି ସେ ଅମୂଲ ମୂଲ।
ପରତେ ହୁଅଇ ସେ ଶୋଭା ଦେଖି
ବିଜେ କରିଛନ୍ତି 'ହଳଦୀ ମୁଖି'।
ପୋଉଷ ଲକ୍ଷ୍ମୀ ସେ ଜଗଜ୍ଜନନୀ
ଜଗତ ଜନଙ୍କ ଚିନ୍ତା ହାରିଣୀ।
କ୍ରମେ କାଳ ବହି ଯାଉଛି ଦେଖ
ଦେଖା ଯାଉନାହିଁ ଶୀତ ପ୍ରକୋପ।
ବଢୁଛି ଗ୍ରୀଷମ ବଢୁଛି ତାପ
ସହି ହେଉନାହିଁ ତା'ର ପ୍ରତାପ।
ଯେତେ ବଢୁଅଛି ଯାନ୍ତ୍ରିକ ଗତି
ବଦଳି ଯାଉଛି ଶାନ୍ତ ପ୍ରକୃତି।
ଅଙ୍ଗାର ବାଷ୍ପର ଅଙ୍ଗାର ଧୂଆଁ
ମଣିଷ ଜାତିକୁ ବୁଲାଏ ଭୁଆଁ।
ଶୀତ ସକାଳର ଶୀତୁଆ ଭାବ
ଖୋଜିଲେ ଏ କାଳେ କାହୁଁ ମିଳିବ।
ଅନୁଭବୀ ଖାଲି ହୁଅନ୍ତି ଝୁରି
ସବୁ ଲାଗେ ଆଜି ସପନ ପରି।

❑❑

# ଜରା ନା କାରା

ଯଉବନ ହଜି ଗଲାଣି      କାବୁ କଲାଣି ଜରା
ଆଣିଛି ସାଥିରେ ଯତନେ      ତା'ର ରଙ୍ଗ ପସରା ।
ଜାତି ଜାତି ଦୁଃଖ ଯାତନା      ରଖିଅଛି ସଜାଡ଼ି
ମାଗକି ନମାଗ ସରାଗେ      ଦେଉଅଛି ଅଜାଡ଼ି ।
ଶରୀରେ ସୀମିତ ନୁହଁଇ      ତା'ର ଯାତନା ପେଡ଼ି
ଟାଣଇ ମନକୁ ଲଗାଇ      ଅବସାଦ ଦଉଡ଼ି ।
ଶରୀରକୁ ଚାହିଁ ବାଣ୍ଟଇ      କଷ୍ଟ ଯାହାକୁ ଯେତେ
ମନକୁ କରଇ ଦୁର୍ବଳ      ଭରି ବିଷାଦ କେତେ ।
ଜରା ନୁହେଁ ଏତ ଲାଗଇ      ସତେ କାରା ନିବାସ
ବାନ୍ଧି ରଖେ ଘର କଣରେ      ଦେଇ ଅଦୃଶ୍ୟ ଫାଶ ।
ସ୍ୱାଧୀନ ଆହାର ବିହାର      ସବୁ ନିଏ ଛଡ଼ାଇ
ନିରଭର ଶୀଳ କରଇ      ଜରା ଲକ୍ଷଣ ଏହି ।
ମନୋବଳ ଦିଏ ଉଜାଡ଼ି      ହରେ ଶରୀର ବଳ
ଏକ ଠାବେ ଦିଏ ବସାଇ      ନାହିଁ ଚଳ ପ୍ରଚଳ ।
ହରିନିଏ ସ୍ମୃତି ଶକ୍ତିକୁ      କିଛି ନରହେ ମନେ
ଅଚିହ୍ନା ପରାୟେ ଲାଗନ୍ତି      ବନ୍ଧୁ ଆତ୍ମୀୟ ମାନେ ।
ମନକଥା ମନେ ମରଇ      କହି ହୁଅଇ ନାହିଁ
କିଏ ସେ ଶୁଣିବ କାହାରି      ପାଖେ ସମୟ ନାହିଁ ।
ସନ୍ତାନ ସନ୍ତତି ଯାଆନ୍ତି      ଦୂର ବିଦେଶେ ଉଡ଼ି
ପିତାମାତା ପଡ଼ି ରହନ୍ତି      ଭିଟା ମାଟି କାମୁଡ଼ି ।

ଏ ଦେଶ ସଂସ୍କୃତି ଶିଖାଏ
ପିତା ପରମ ଧର୍ମ
ମହୀ ଠାରୁ ମାତା ମହାନ
କର ତାଙ୍କରି କର୍ମ।
ସଂସ୍କୃତି ରହିଛି ସଂସ୍କୃତି
ବାଟେ ପୋଥି ଭିତରେ
ଘଟଣା ଘଟେ ବିପରୀତ
ଆଚରଣ ରୀତିରେ।
ଭୋଗ ଲାଳସାର ଲହଡ଼ି
ମାଡ଼ି ଆସଇ ଖରେ
ସ୍ନେହ ପ୍ରୀତି ସେବା ଶୁଶ୍ରୂଷା
କାହିଁ ରହିଲା ଦୂରେ।
ବଦଳିଲା ଯୁଗ ଧରମ
ବଦଳିଲା ମଣିଷ
ବୁଢ଼ା ବୁଢ଼ୀଙ୍କର ଭରସା
ମାତ୍ର 'ଜରା ନିବାସ'।
ଆସିପାରେ ଦିନେ ସମୟ
ଜରାନିବାସେ ସ୍ଥାନ
ନ ପାଇ ବାହୁଡ଼ି ଆସିବେ
ହେଜି ପ୍ରାରବ୍ଧ କର୍ମ।
ନିଃସଙ୍ଗ ଜୀବନ ସାଙ୍ଗକୁ
ରୋଗ ଯନ୍ତ୍ରଣା ଦୁଃଖ
ସହିବାକୁ ଦିଅ ଶକତି
ଆହେ ପଙ୍କଜ ମୁଖ।
କି କର୍ମ କରିଛି ପୂରୁବେ
ହେଜି ନ ପାରେ ଆଜି ।
ସରିଯାଉ ଏହି ଜୀବନ
ତୁମ ନାମକୁ ଭଜି।



# ମା

ମା' ବୋଲି ଯେଉଁ ନାଁ ଟି କେଡ଼େ ମଧୁର ସତେ
ତା' ଠାରୁ ଅଧିକ ମଧୁର କିଛି ନଲାଗେ ମୋତେ।
ତା' ଲାଗି ଦେଖିଲି ସୁନ୍ଦର ଏଇ ପୃଥିବୀ ମାଟି
ତା' ପାଇଁ କହିଲି ସିନା ମୁଁ ତୁଣ୍ଡେ ଭାଷା ଦରୋଟି।
ତା' ଅମୃତେ ପୁଷ୍ଟ ହୋଇଛି ଏଇ ପାର୍ଥିବ ତନୁ
ତା' ରୂପ ମାଧୁରୀ ପାଶୋର କେବେ ନଯିବ ମନୁ।
ତା' ପଣତ କାନି ମୋ ପାଇଁ ନିରିଭୟ ଆଶ୍ରୟ
ତା' ମଧୁର ବାଣୀ ଲାଗଇ ସତେ ଅମୃତମୟ।
ରୋଗରେ ହେଲେ ମୁଁ ଆକ୍ରାନ୍ତ ତାକୁ ନିଦ ନ ଥାଏ
କୋମଳ ଶୀତଳ ପରଶେ ବସି ଆଉଁଷି ଦିଏ।
ଯେତେ ଦେବତାଙ୍କୁ ଜାଣିଛି ଡାକେ ସଭିଙ୍କୁ ବସି
ଭୋଗ ରାଗ ପୂଜା ଅର୍ଚ୍ଚନା ମନେ ମନେ ମନାସି।
ତା' ଆଖି ଆଲୁଅ ଦେଖାଏ ସିନା ନୂତନ ରାହା
ଜୀବନ ଯୁଦ୍ଧରେ କେବଳ ତା'ର ଆଶିଷ ସାହା।
ମା' ଅଟେ ତ୍ୟାଗ କରୁଣା ଦୟା ଜୀବନ୍ତ ମୂର୍ତ୍ତି
ବାନ୍ଧି ରଖେ ପରିବାରକୁ ଦେଇ ସ୍ନେହ ପୀରତି।
ନଥିଲେ ନଥାଉ ସମ୍ପଦ ଯା'ର ଅଛିଟି ମା'
ଶତ ଅଇଶ୍ୱର୍ଯ୍ୟୁଁ ଅଧିକା ଏକ ଦୁଃଖିନୀ ମା।
ଜନନୀ ଜନମଦାତ୍ରୀ ସେ ତା'ର ତୁଳନା ନାହିଁ
କେ ଶୁଝି ପାରିବ ତା' ଋଣ ମାଟି ପିଣ୍ଡରେ ଥାଇ।

❑❑

# ସ୍ୱାଗତ ନୂଆ ବରଷ ୨୦୨୧

ନୂଆ ବରଷ ଦିଅ ହରଷ | ଦେଶବାସୀଙ୍କ ପ୍ରାଣେ
ଗଲା ବରଷ ବେଦନା ତ୍ରାସ | ନ ରହୁ କାହାମନେ।
ହସ ଖୁସିରେ ସାଙ୍ଗ ସାଥିରେ | ବିତିଯାଉ ଜୀବନ
ଦୂରେଇ ଯାଉ ରୋଗ ଯନ୍ତ୍ରଣା | ଅଭାବ ଅନଟନ।
ସୁଦୃଢ଼ ହେଉ ମନ ହୃଦୟ | ସୁଦୃଢ଼ ହେଉ ମତି
ନୂତନ କର୍ମେ ସଜାଡ଼ି ହେଉ | ଉଜୁଡ଼ା ଅର୍ଥନୀତି।
ଶିଖାଇ ଦିଅ ସାମାଜିକତା | ଶିଖାଇଦିଅ ଗୁଣ
ପରଦୁଃଖରେ କାନ୍ଦିବା ଶିଖୁ | ଏ ଦେଶ ଶିଶୁ ପ୍ରାଣ।
ଦେଲେ ମିଳଇ ନଦେଲେ ନାହିଁ | ବିଧିର ଏ ବିଧାନ
ପ୍ରକୃତି ଠାରୁ ଶିଖୁ ମାନବ | 'ତ୍ୟାଗ' ମହତ ଗୁଣ।
ଏତିକି ମାତ୍ର ମାଗୁଣି ମୋର | ନୂଆ ବରଷ ଶୁଣ
ବିଭୁ ସୁମରି କରେ ସ୍ୱାଗତ | କରିଦିଅ ପୂରଣ।



# ପହିଲି ସକାଳ ୨୦୨୧

ଦୁଇ ହଜାର କୋଡ଼ିଏ ଗଲା    ଆସିଲା ଏକୋଇଶି
ପୂରୁବ ନଭେ ଏବେ ବି ଦିଶେ    'କୋଭିଡ଼ି' ଅମାନିଶି ।
ବଦଳିଗଲା ଜୀବନଚର୍ଯ୍ୟା    ବଦଳିଗଲା ନୀତି
ଅନ୍ତର ହେଲା କରମର୍ଦ୍ଦନ    ଅନ୍ତର ହେଲା ପ୍ରୀତି ।
ଘରୁ ଟିକିଏ ଗୋଡ଼ କାଢ଼ିଲେ    ବାନ୍ଧିବା ନାକ ପାଟି
ଚିହ୍ନା ମୁହଁଟି ଅଚିହ୍ନା ଲାଗେ    ଏ ତ କରୋନା ଭେଟି ।
ଜନ ଜୀବନ ହେଲା ଉଚ୍ଛନ୍ନ    ଗଲା ବରଷ ସାରା
ନବୀନ ତେଜେ ଆସ ତପନ    ଢାଳି ଆଲୋକ ଧାରା ।
ଶିଖାଇଦିଅ ଗଢ଼ିବା ମନ୍ତ୍ର    ମଣିଷ ଜାତି କାନେ
ଜଗାଇ ଦିଅ ଉନ୍ମାଦନା    ନିସ୍ତେଜ ନର ପ୍ରାଣେ ।
ହଜିଲା ଶିରୀ ଆସିବ ଫେରି    ମଣିଷ ହାତେ ପୁଣି
ଜୀବ ଜଗତ ହେବ ଆଶ୍ୱସ୍ତ    ହସିବ ପ୍ରକୃତି ରାଣୀ ।
ଧରିତ୍ରୀ ମାତା ସହିଛି କେତେ    ଯାତନା ଅସୁମାରୀ
ନବହି ରୋଷ ରଖିଛି ସଦା    ସୃଷ୍ଟି ପ୍ରକ୍ରିୟା ଜାରି ।
ସ୍ୱାର୍ଥ ବରଜି ଶୋଷଣ ଭୁଲି    ପ୍ରକୃତି ସେବା କରି
ବିଛାଇ ଦେଉ ସବୁଜ ରଙ୍    ବନ କାନନ ଗିରି ।
ବଢ଼ାଇ ଦେଉ ବୃକ୍ଷ ସମ୍ପଦ    ଶ୍ୟାମଳ ଘଞ୍ଚ ବଣ
ବାୟୁମଣ୍ଡଳ ହେବ ନିର୍ମଳ    ବଞ୍ଚିବେ ଜୀବଗଣ ।
ପୃଥିବୀ ମାତା ଗରଭ ଚିରି    ଉଠିବେ ପୁଣି ଫୁଟି
ଜାତି ଜାତିକା ବିବିଧ ଜୀବ    ହଜିଲା ଠାନୁ (ସ୍ଥାନରୁ) ଉଠି ।

ଗଛ ବଞ୍ଚିଲେ ବଞ୍ଚିବେ ଜୀବ        ପ୍ରକୃତି ହେବ ଶାନ୍ତ
ମହାମାରୀର କୁହୁକ ଜାଲେ        ନହୋଇ ହନ୍ତସନ୍ତ।
ରୁଦ୍ଧ ଦୁଆର ଗମ୍ଭୀରା ଖୋଲି        ଜଗତ ନାଥ ହରି
ସଜ ହେଲେଣି ଶୁଣିବା ପାଇଁ        ଦୀନ ଦୁଃଖୀ ଗୁହାରି।
ଦିଅହେ ପ୍ରଭୁ ମଣିଷ ମନେ        ଶାନ୍ତିର ସଦ୍‌ଭାବନା
ବଞ୍ଚିବା ଶିଖୁ ପ୍ରକୃତି ସାଥେ        ନହୋଇ ବାଟ ବଣା।

(ମହାମାରୀ 'କରୋନା' ପାଇଁ ବଡ଼ ଦେଉଳ ସାଧାରଣ ଦର୍ଶନ ନିମିତ୍ତ ଦୀର୍ଘଦିନ ବନ୍ଦ ରହିଥିଲା)



# ଜନନୀ ଜନମଭୂମି

କେଉଁଠି ଅଛି ଏମିତି ଦେଶ ଭାରତ ବର୍ଷ ପରି
ଯୋଗୀ ଋଷିଙ୍କ ଜନମ ଭୂମି କିଏ ହେବ ତା' ସରି ।
ଏ ଦେଶ ଋଷି ରଚନା କଲେ ଜ୍ଞାନ ଭଣ୍ଡାର 'ବେଦ'
ସାରା ବସୁଧା ମଣିଲେ ଏକ ନରଖି କିଛି ଭେଦ ।
ଶିଖାଇଦେଲେ ଜନମ ଭୂମି ସରଗ ଠାରୁ ବଡ଼
ତା' ସେବା କଲେ ଜୀବନ ଭରି ହୋଇବ ଦିନେ ବଡ଼
ବିରଳ ତାଙ୍କ ଶ୍ରଦ୍ଧା ସମ୍ମାନ ଜନମ ଭୂମି ପାଇଁ
ଖୋଜି ବସିଲେ ବିଶ୍ୱ ସାହିତ୍ୟେ କେଉଁଠି ଦେଖା ନାହିଁ ।
ଜଡ଼ ନୁହଁଇ ଜନମ ଭୂଇଁ ଚୈତନ୍ୟ ମୟୀ ଦେବୀ
ସଞ୍ଚରେ ପ୍ରାଣ ପ୍ରତି ଅଣୁରେ ନମସ୍ୟ ଭୂମି ଦେବୀ ।
ଜନନୀ ପରି ପାଳଇ ସଦା ଖାଦ୍ୟ ପାନୀୟ ଦେଇ
ଜୀବନ ଶେଷେ ତାହାରି କୋଳ ଚିର ବିଶ୍ରାମ ଭୂଇଁ ।
ବାତ୍ସଲ୍ୟମୟୀ ଜନନୀ ସିଏ କରୁଣା ପ୍ରେମମୟୀ
ସମୃଦ୍ଧ କରେ ସନ୍ତାନ ଗଣେ ଐଶ୍ୱର୍ଯ୍ୟ ବାଣ୍ଟିଦେଇ ।
ସମ୍ପଦ ତା'ର ଶୁଣାଏ ସଦା ଦିବ୍ୟ ସନ୍ଦେଶ ବାଣୀ
କର୍ତ୍ତବ୍ୟନିଷ୍ଠା ଦାନ ମହତ୍ତ୍ୱ ଶିଖାଏ ତରଙ୍ଗିଣୀ ।
ଶୁଭ ସଂକଳ୍ପେ ପର୍ବତ ପରି ସ୍ଥିର ଅଚଳ ରୁହ
ପରହିତରେ ଜୀବନ ଦାନ ଶିଖାଏ ମହୀରୁହ ।
କଣ୍ଟା ଘେରରେ ଥିଲେବି ଫୁଲ ଆନନ୍ଦେ ହସୁଥାଇ
'ହସି ହସିକା ସହିବା ଦୁଃଖ ବାରତା ଦିଏ କହି ।
ଧରିତ୍ରୀ ମାତା ଉପରେ ଯେବେ ହୁଅଇ ଅତ୍ୟାଚାର
ବିଶ୍ୱ ନିୟନ୍ତା ଜଗତ ପିତା ନିଅନ୍ତି ଅବତାର ।
ପ୍ରଭାତୁ ଉଠି ଶଯ୍ୟା ବରଜି ମାତୃ ବନ୍ଦନା କରି
ପୃଥିବୀ ମାତା ଚରଣ ତଳେ ଦିଅ ପ୍ରଣତି ଢାଳି ।



# ବାଣୀ ଆଗମନେ

ଶୀତ ଋତୁ ବିଦା ହେଲାଣି    ଆସେ ମଧୁ ବସନ୍ତ
କୁହୁ କୁହୁ ତାନେ ବାରତା    ଦିଏ ବସନ୍ତ ଦୂତ ।
ଆସୁଛନ୍ତି ଦିବ୍ୟ ଜନନୀ    ଧରା ମଣ୍ଡନ କରି
ସାରଦା ସେ ଜ୍ଞାନ ରୂପିଣୀ    ଶୋଭା ଶିରୀକୁ ଧରି ।
ସ୍ୱାଗତ କରଇ ଧରଣୀ    ଧରି ବିଚିତ୍ର ବିଭା
ବିଭାମୟୀଙ୍କର ବିଭାକୁ    କିବା ଉପମା ଦେବା ।
ଆମ୍ବଡାଳେ ବସି କୋକିଳ    ଗାଏ ସ୍ୱାଗତ ଗୀତି
ସ୍ୱାଗତ କରନ୍ତି କୁସୁମ    ଉପବନରେ ଫୁଟି ।
ବହିନିଏ ଦିବ୍ୟ ସନ୍ଦେଶ    ଚୋରା ମୃଦୁ ମଳୟ
କହିଦିଏ ଧରା ବାସୀଙ୍କୁ    ଆଉ ନକର ଭୟ ।
ନବ କିଶଳୟେ ଅଞ୍ଜଳି    ଭରି ପାଦପ ଗଣ
ବନ୍ଦିବେ ଜନନୀ ପୟର    ବାଞ୍ଛା ହେବ ପୂରଣ ।
ଠାବେ ଠାବେ ବିଦ୍ୟା ମନ୍ଦିରେ    ଦିବ୍ୟ ମଣ୍ଡପ ସାଜି
ଚାହିଁଛନ୍ତି ପାଦ ପୂଜିବେ    ଶିଶୁ କଳିକା ରାଜି ।
ଜ୍ଞାନ ନେତ୍ର ଖୋଲିଦିଅ ମା'    ଯାଉ ଜ୍ଞାନ ପ୍ରସରି
ସ୍ୱାର୍ଥ ପାଇଁ ଭାଇ ବୁକୁରେ    ଭାଇ ନଦେଉ ଛୁରୀ ।
ବାଜିଉଠୁ ହୃଦ ତନ୍ତ୍ରୀରେ    ଦିବ୍ୟ ବୀଣା ଝଙ୍କାର
ଅଜ୍ଞାନ କାଳିମା ଅନ୍ତରୁ    ହୋଇଯାଉ ଅନ୍ତର ।
ବଦଳାଇ ଦିଅ ଜନନୀ    ମୂଢ଼ ମଣିଷ ମତି
ଶୁଭ କର୍ମ କରି ମରତେ    ଲଭୁ ପରମ ଗତି ।



# ମାଟି ମାଆର ଦୁଃଖ

ଘେନିଲେ ସେଦିନ ନତଶିରେ ମହୀ ସୃଷ୍ଟିକର୍ତ୍ତାଙ୍କ ନିର୍ଦ୍ଦେଶ
ଅଳି ଅରଦଳି ସବୁ ସେ ସହିବେ ମନେ ନବହିଣ ରୋଷ।

ପାଳନ୍ତି କର୍ତ୍ତବ୍ୟ ସେଦିନୁ ଧରଣୀ ଉଦାର ବକ୍ଷ ବିସ୍ତାରି
କୀଟ ଠାରୁ ନର ଜାତି ଜାତି ଜୀବ ସଭିଙ୍କୁ ନିଜର କରି।

ନଦନଦୀ ବଣ ପାହାଡ଼ ଝରଣା ମେଲି ଶୋଭାର ପସରା
ପାଳୁଛନ୍ତି ଜୀବ ଜଗତକୁ ଦେଖ ଜନନୀ ସେ ବିଶ୍ୱମ୍ଭରା।

ଯୁଗ ବଦଳିଲା ବଦଳିଲା କାଳ ହେଲା ତପୋବଳ ହାନୀ
ଭୋଗ ଲାଳସାରେ ହରାଇଲା ନର ବିଚାର ବିବେକ ପୁଣି।

ହଜିଲା ସଂସ୍କୃତି ପରମ୍ପରା ନୀତି ହଜିଗଲା ବେଦବାଣୀ
ମଣିଷ ହାତରେ ଜୀବନ ହାରଇ ସ୍ୱର୍ଣ୍ଣପ୍ରସୂ ଏ ଧରଣୀ।

ଦିନେ ଯେଉଁମାଟି ହସି ଉଠୁଥିଲା ଶସ୍ୟ ଶ୍ୟାମଳା ହୋଇ
ଆଜିସେ ମାଟିକୁ କହୁଛନ୍ତି ଲୋକେ ଇଏତ ଟାଙ୍ଗରା ଭୂଇଁ।

ଗୋମାତା ବଢ଼ାଏ ମାଟି ପ୍ରାଣ ଶକ୍ତି ମଳମୂତ୍ର ଖତ ଦେଇ
ସମ୍ପଦ ଖାତାରୁ 'ଗୋ ସମ୍ପଦ' ନାମ ଗଲାଣି ନିଶ୍ଚିହ୍ନ ହୋଇ।

ଜିଆ ପରି କୋଟି କୋଟି ଅଣୁଜୀବ ମାଟି ତଳେ ଲୁଚିଥାନ୍ତି
ଶ୍ୱାସ ପ୍ରଶ୍ୱାସରେ ମାଟି ମାଆକୁ ସେ ପ୍ରାଣବନ୍ତ କରିଥାନ୍ତି।

ରସାୟନ ସାର ପ୍ରୟୋଗ ଫଳରେ ଅଣୁଜୀବ ହେଲେ ହତ
ପ୍ରାଣଶକ୍ତି ଚାଲିଗଲେ କି ଏ ମାଟି ରହିପାରିବ ଜୀବନ୍ତ।

କଳ କାରଖାନା ବଢ଼ି ବଢ଼ି ଚାଲେ ହୁ ହୁ କ୍ରମାଗତ
ବର୍ଜ୍ୟବସ୍ତୁ ବସେ ମାଟିକୁ ଆବୋରି ମାଟି ହୁଏ ପ୍ରଦୂଷିତ।

ଅଜ୍ଞାନ ସନ୍ତାନ ଦୋଷକୁ ଜନନୀ ମନରେ ଧରି ନଥାଇ
ବୁଦ୍ଧି ଜ୍ଞାନବନ୍ତ ବିଚାର ହୁଡ଼ିଲେ ଅବଶ୍ୟ କୋପ କରଇ ।

ନମଣ ତାହାକୁ ହୀନ ମାଟି ବୋଲି ସେ ତ ଜଗତର ମାଆ
ତାକୁ ଯତ୍ନ କଲେ ଆହାର ସେ ଦେବ ସେହି ଏକା ଆମ ସାହା ।



# ଗୁରୁପଦ ଭଜରେ ମନ

ଗୁରୁପଦ ଭଜରେ ମନ

ଲଭିବୁ ଯଦି ତୁ ପରମ ଧାମ

ଗୁରୁ ତୋର ବନ୍ଧୁ ଗୁରୁ କୃପାସିନ୍ଧୁ

ଗୁରୁଦତ୍ତ ମନ୍ତ୍ର ପରମ ନାମ

ଗୁରୁବାଣୀ ତୋର ଜୀବନ ଆଧାର

ଗୁରୁଭକ୍ତି କରେ ମନ ନିଷ୍କାମ। ।୧।

ଗୁରୁମୂର୍ତ୍ତି ଧ୍ୟାନ ବନ୍ଧନ ମୋଚନ

ଗୁରୁ ଅଟନ୍ତି ପରମ କାରଣ

ଗୁରୁ ଆଶୀର୍ବାଦ ପରମ ପ୍ରସାଦ

ଗୁରୁ ହର ବ୍ରହ୍ମା ଶ୍ରୀ ନାରାୟଣ ।୨।

ଗୁରୁ ପଦେ ମତି ପରମ ମୁକତି

ଗୁରୁ ପାଦ ପଦ୍ମେ ରଖରେ ଧ୍ୟାନ

ଗୁରୁ ଏକା ସାର ସକଳ ଅସାର

ଗୁରୁ କୃପା ଅଟେ ପରମ କାମ୍ୟ ।୩।



# ଜଣାଣ

ଗୁରୁଦେବହେ, ପାଦେ ଢାଳେ ପ୍ରଣତି

ଅତି ମୂଢ଼ମତି ନାହିଁ ଭାବ ଭକ୍ତି

ଅକିଞ୍ଚନ ମାଗେ ଶରଣାଗତି ।୧।

ଆହେ ଦୟାନିଧି କରୁଣା ବାରିଧି

ତୁମ୍ଭ କୃପା ବିନା କାହିଁ ମୁକତି

କରୁଣା ସାଗର ନକର ହେ ପର

ତୁମ୍ଭ ଛଡ଼ା ମୋର ନାହିଁଟି ଗତି ।୨।

ତୁମ୍ଭେ ପିତାମାତା ପରମ ଦେବତା

ତୁମ୍ଭେ ଏକାସିନା ଗତି ମୁକତି

ହେ ମହା କାଣ୍ଡାରି କରିଦିଅ ପାରି

ସଙ୍କଟ ପୂରିତ ସିନ୍ଧୁ ଝଟତି ।୩।

ତୁମ୍ଭ ପଦେ ସଦା ରହୁ ମୋର ମତି

ନେତ୍ର ଦେଖୁ ତବ ଦିବ୍ୟ ମୂରତି

'ଜୟଗୁରୁ' ମନ୍ତ୍ର ରଟୁ ମୋ ରସନା

ତବ ଗାଥା ସଦା ଶୁଣୁ ମୋ ଶ୍ରୁତି ।୪।



# ଗୃହିଣୀ

ବ୍ରହ୍ମଚାରୀ, ଗୃହୀ, ବାନପ୍ରସ୍ଥୀ ପୁଣି ସଂସାର ତ୍ୟାଗୀ ସନ୍ନ୍ୟାସୀ
ଜୀବନ କାଳକୁ ବାଣ୍ଟି ଦେଇଛନ୍ତି ଭାରତର ମୁନୀ ଋଷି ।

ସମାଜ ଭିତରେ ଗୃହସ୍ଥ ଆଶ୍ରମ ଅତ୍ୟନ୍ତ ମହତ ଜାଣ
ଗୃହିଣୀ ନଥିଲେ ସଫଳ ନୁହଁଇ ଗୃହସ୍ଥାଶ୍ରମ ଜୀବନ ।

ସହଧର୍ମିଣୀକୁ ଲୋଡ଼ିଥାଏ ଗୃହୀ ଆଦର୍ଶ ଜୀବନ ପାଇଁ
ଜୀବନ ଯାତ୍ରାରେ ଧରମେ କରମେ ସହଯାତ୍ରୀ ହୁଏ ସେହି ।

କାର୍ଯ୍ୟରେ ସେ ମନ୍ତ୍ରୀ ସେବାରେ ସେ ଧାତ୍ରୀ କ୍ଷମାଗୁଣେ ବସୁମତୀ
ଭୋଜନ ବେଳେ ସେ ଜନନୀ ସଦୃଶା ମମତାରେ ମଧୁମତୀ ।

ବାତ୍ସଲ୍ୟ ପ୍ରେମର ଜାହ୍ନବୀ ଧାରା ସେ ସନ୍ତାନ ସନ୍ତତି ପାଇଁ
ସ୍ୱାମୀଙ୍କୁ ଦିଏ ସେ ନୈସର୍ଗିକ ସୁଖ ସେବା ପରିବାର ପାଇଁ ।

ସେବା ଶୁଶ୍ରୁଷାର ମୂର୍ତ୍ତିମନ୍ତ ଦେବୀ ଅସୀମ କରୁଣାବତୀ
ଗୃହିଣୀ ସେ ଗୃହେ ଛାଇ ଦେଇଥାଏ ବୈକୁଣ୍ଠ ଭୁବନ ଶାନ୍ତି ।

ପୁରୁଷ ପ୍ରଧାନ ସମାଜରେ ଆଜି ବସ୍ତୁବାଦୀ ଚିନ୍ତାଧାରା
ସେ କାହିଁ ବୁଝିବ ଗୃହିଣୀର ତ୍ୟାଗ ବିମଳ ପିୟୂଷ ଧାରା ।

ଉପାର୍ଜନକ୍ଷମ ମହିଳାଙ୍କ ସ୍ଥାନ ସମାଜରେ ଥାଏ ଉଚ୍ଚେ
ତ୍ୟାଗ ତିତିକ୍ଷାର ଜୀବନ୍ତ ପ୍ରତିମା ଗୃହିଣୀଟି ରହେ ପଚ୍ଛେ ।

ସୀମିତ ସମୟ ପରିଶ୍ରମ କରି ପାରିଶ୍ରମିକ ମିଳିଲେ
'ଶ୍ରମ'ର ମର୍ଯ୍ୟାଦା ଦେଇଥାଏ ତାକୁ 'ଅର୍ଥଶାସ୍ତ୍ର' ସମାଜରେ ।

ସନ୍ତାନର ସେବାଯତ୍ନ କରି ପୁଣି ପରିବାର ଗୃହ କର୍ମ
କରୁଥିଲେ ମାଆ ଅର୍ଥଶାସ୍ତ୍ରେ ତାହା ବୋଲାଯାଏ ନାହିଁ 'ଶ୍ରମ' ।

ଗୃହିଣୀର ଦେବ ଦୁର୍ଲ୍ଲଭ ଗୁଣର କିଣାବିକା ହୁଏ ନାହିଁ
କେମିତି ମାପିବ 'ଅର୍ଥଶାସ୍ତ୍ର' ତା'ର ପାର୍ଥିବ ମାପକ ନାହିଁ।

ବସ୍ତୁବାଦୀ ଚିନ୍ତା ଅର୍ଥକାରୀ ମନ ସର୍ବତ୍ର ରଚଇ ଲୀଳା
କହିଥାନ୍ତି ଲୋକେ ଏତେ ପାଠପଢ଼ି ଶେଷରେ 'ଗୃହିଣୀ' ହେଲା।

ହାୟରେ ସମାଜ କେବେ ସମଝିବୁ ଗୃହିଣୀର ସେବାଦାନ
ଯେଦିନ ବୁଝିବୁ ସେହିଦିନ ହେବ ଗୃହ ସରଗ ସମାନ।



# ପଲ୍ଲୀ ସଞ୍ଜ

ଦିନ କାମ ସାରି ଦିନନାଥ ଯେବେ
ମେଲାଣି ନିଅନ୍ତି ଧୀରେ
ନଇଁ ନଇଁ ଆସେ ରଙ୍ଗବୋଳା ସଞ୍ଜ
ପଲ୍ଲୀ ଗାଁ ମଥା ପରେ ।
ବାରୁଣୀ ଗଗନ ବୁଣି ଦେଉଥାଏ
ସତେକି ନାଲି ମୁରୁଜ
ବାହୁଡ଼ନ୍ତି ନିଡ଼େ ପୁଞ୍ଜ ପୁଞ୍ଜ ପକ୍ଷୀ
ଆକାଶେ ନିରେଖି ସଞ୍ଜ ।
ତୋଟା ଉହାଡ଼ରୁ ଭାସି ଆସୁଥାଏ
ଗୋପାଳ ବଇଁଶୀ ସ୍ୱନ
ଗୋଠେ ବାହୁଡ଼ନ୍ତି ଗୋଧନ ସକଳ
ଗୋଧୂଳିରେ ଦାଣ୍ଡ ପୂର୍ଣ୍ଣ ।
ମନ୍ଦିର ବେଢ଼ାରୁ ଭାସି ଆସେ ପୁଣି
ଘଣ୍ଟ ଘଣ୍ଟା ଶଙ୍ଖ ଧ୍ୱନି
ବୃନ୍ଦାବତୀ ତଳେ ସଞ୍ଜବତି ଜାଳେ
ପଲ୍ଲୀବଧୂ ଭୁଆସୁଣୀ ।
ଶୁଭି ଯାଉଥାଏ ବିଲୁଆ ନନାର
ସଞ୍ଜ ପହରିଆ ଡାକ
ସଞ୍ଜ ହେଲା ଜାଣି ଘରକୁ ବାହୁଡ଼େ
କୃଷି କ୍ଷେତରୁ କୃଷକ ।
ଭାଗବତ ଟୁଙ୍ଗି ମୁଖରିତ ହୁଏ
ଭାଗବତ ଅମୃତରେ

ମଜି ଯାଇଥାନ୍ତି ବୁଢ଼ା ବୁଢ଼ୀମାନେ

ଭାଗବତ ଚେତନାରେ ।

ଚପଳ କିଶୋର ନାତି ନାତୁଣୀଙ୍କୁ

ବୁଢ଼ୀମା' ସାଙ୍ଗରେ ଧରି

କାହାଣୀ ପେଡ଼ିକୁ ଖୋଲି କହେ ଥିଲା

'ରଜାଝିଅ ସୁକୁମାରୀ' ।

ଅଛି ସେହି ଗାଁ ଆସୁଛି ସେ ସଞ୍ଜ

ନାହିଁ ତାର ବର୍ଣ୍ଣ ବିଭା

ନାହିଁ ତୋଟାମାଳ ନାହିଁ କିଆବୁଦା

ଗାଈ ଗୋଠସବୁ ପଦା ।

ମନ୍ଦିର ପ୍ରାଙ୍ଗଣେ ଶୁଭୁନାହିଁ ଆଜି

ଘଣ୍ଟ ଘଣ୍ଟା ଶଙ୍ଖ ଧ୍ୱନି

ବିଜୁଳି ଚାଳିତ ଯାନ୍ତ୍ରିକ ଶବଦ

କାନ ଫାଟିଯାଏ ଶୁଣି ।

ହଜି ଯାଇଛି ସେ ଭାଗବତ ଟୁଙ୍ଗି

ନଶୁଭେ ଅମୃତ ବାଣୀ

ଚଉଁରା ମୂଳରେ ଦିଶୁନାହିଁ ଆଉ

ପଲ୍ଲୀ ବଧୂର ଓଢ଼ଣୀ ।

ଯେଉଁ କ୍ଷେତ ଦିନେ ହସି ଉଠୁଥିଲା

ସୁନାର ଫସଲ ଧରି

ଆଜି ସେଠି ବିଜେ ଅଟ୍ଟାଳିକା ଲକ୍ଷ୍ମୀ

ସଖୀ ସହଚରୀ ଧରି ।

ଗାଁର ସନ୍ତାନ ସହର ନିବାସୀ

ଗାଁ ଦିଶେ ଖାଆଁ ଖାଆଁ

କିଏସେ କହିବ ସରଗଠୁଁ ବଡ଼

କେଡ଼େ ସୁନ୍ଦର ମୋ ଗାଆଁ ।

❑❑

# ଶିବ ସ୍ତୁତି

ଜୟ କଇଳାସ ପତିହେ ଜୟ ଶିବଶଙ୍କର
ନାନା ସ୍ଥାନେ ବିରାଜିତ ହେ ନାମ ନାନା ପ୍ରକାର ।
କୁଶେଇ ନଦୀର କୂଳରେ ନାମ କୁଶଳେଶ୍ୱର
କପିଳାସ ଗିରି ଶିଖରେ ତୁମେ ଚନ୍ଦ୍ରଶେଖର ।
କାଶୀକ୍ଷେତ୍ରେ ବିରାଜିତ ହେ ତୁମେ ଶ୍ରୀ ବିଶ୍ୱନାଥ
ଶ୍ରୀ କ୍ଷେତ୍ରରେ ନାମ ପ୍ରସିଦ୍ଧ ପ୍ରଭୁ ଶ୍ରୀଲୋକନାଥ ।
ନାମ ତୁମ ଧବଳେଶ୍ୱର ମହାନଦୀ ବକ୍ଷରେ
ବିଖ୍ୟାତ ତୁମର ପରବ ବଡ଼ଓଷା ନାମରେ ।
ଦକ୍ଷିଣ ସାଗର ତଟରେ ତୁମେ ଶ୍ରୀ ରାମେଶ୍ୱର
ଲିଙ୍ଗରାଜ ନାମେ ଏକାମ୍ର କ୍ଷେତ୍ରେ କର ବିହାର ।
ଶୈବ କ୍ଷେତ୍ର ନାମେ ବିଦିତ ଏଇ ଭୁବନେଶ୍ୱର
ଯହିଁ ଯାଏ ଆଖି ଦେଖଇ ତୁମ୍ଭ ଲିଙ୍ଗ ଶରୀର ।
ବରଷକେ ଥରେ ରୁକୁଣା ରଥେ କର ବିଜୟ
ଜୟ ଭୋଳାନାଥ ଶିବ ହେ ତୁମ୍ଭର ହେଉ ଜୟ ।
ବିଶ୍ୱ ବ୍ରହ୍ମାଣ୍ଡରେ ବିରାଜ ପ୍ରଭୁହେ ବିଶ୍ୱପତି
ତୁମ୍ଭ ନାମ ସ୍ଥାନ ବର୍ଣ୍ଣିବି ମୋର କାହିଁ ଶକତି ।



# ରାମକୃଷ୍ଣ ମଠରେ 'ଶ୍ରୀରାମକୃଷ୍ଣ ଦିବସ'

ରାମକୃଷ୍ଣ ମଠରେ 'ରାମକୃଷ୍ଣ' ଦିବସ
ଝରୁଛି ଅମୃତବାଣୀ ଜୀବନର ରସ ।
ସଅଳ ଶୁଣିବା ଚାଲ ପ୍ରାଣ ହେବ ଧନ୍ୟ
ଜୟ ରାମକୃଷ୍ଣ ଜୟ ପତିତ ପାବନ ।
ଧନ୍ୟ ତବ କଥାମୃତ ଧନ୍ୟ ଭକ୍ତବୃନ୍ଦ
ଶୁଣିଲେ ଶ୍ରବଣ ମୋକ୍ଷ ହୃଦୟ ଆନନ୍ଦ
ପାପୀ ତାପୀ ଉଦ୍ଧାରଣେ ତୁମ୍ଭ ଅବତାର
କୃପା କଳ୍ପତରୁ ତୁମେ ତୁମ୍ଭ 'ବାକ୍ୟ ସାର ।
ଜୟ ମାତା ଠାକୁରାଣୀ ଜନନୀ ସାରଦା
ଇଚ୍ଛନ୍ତି ସନ୍ତାନ ଗଣେ ତବାଶିଷ ସଦା ।
କୃପାମୟୀ ବନ୍ଦେ ତବ ଅରୁଣ ଚରଣ
ଦିଅ ଗୋ ଜନନୀ ପାଦେ ମାଗଇ ଶରଣ
ଜୟ ସ୍ୱାମୀ ବ୍ରହ୍ମାନନ୍ଦ ହେ ବିବେକାନନ୍ଦ
ବନ୍ଦନା କରଇ ତବ ଚରଣାରବିନ୍ଦ ।

(ରାମକୃଷ୍ଣ ମଠ, ଭୁବନେଶ୍ୱରରେ 'ସ୍ୱାମୀ ବ୍ରହ୍ମାନନ୍ଦ ଜୟନ୍ତୀ ୧୨-୦୨-୨୦୨୧ ଉତ୍ସବ ଅବସରରେ ଲିଖିତ)



# ରାମକୃଷ୍ଣ ମଠରେ 'ବ୍ରହ୍ମାନନ୍ଦ ଦିବସ'

ଭାସି ଆସେ କଥା ଅମୃତ ଚୋରା ବସନ୍ତ ବାତେ
ପୁଲକ ଜାଗଇ ପରାଣେ ମନ ଧାଏଁ ତୁରିତେ।
ଦେଖିବାକୁ ଦିବ୍ୟ ମଣ୍ଡପେ ଶାନ୍ତ କାନ୍ତ ମୂରତି
ଛବି ନୁହେଁ ସେ ତ ସାକ୍ଷାତ କଳ୍ପତରୁ ମୂରତି।
ଜୟ ରାମକୃଷ୍ଣ ଜୟହେ ଜୟ ତୁମ୍ଭ ବଚନ
ଯୁଗଧର୍ମ ଜାଣି ଧରଣୀ ବକ୍ଷ କଲ ମଣ୍ଡନ।
ହିନ୍ଦୁ, ଇସିଲାମ, ଖ୍ରୀଷ୍ଟାନ କିଛି ନାହିଁ ବିଚାର
ସର୍ବଧର୍ମ ସମନ୍ୱୟରେ ତୁମେ ଧର୍ମାବତାର।
ଜଣାଉଛି କୋଟି ପ୍ରଣାମ ପଦ୍ମ ଚରଣ ତଳେ
ଯୋଗ୍ୟ ହେବି ତବ ମୂରତି ସ୍ଥାପିବାକୁ ଅନ୍ତରେ।
ବିରାଜିତା ଦିବ୍ୟ ଜନନୀ ମାତା ସାରଦାମଣି
ଶ୍ୱେତ ବସ୍ତ୍ର ପରିହିତା ମା ଶ୍ୱେତପଦ୍ମ ବାସିନୀ।
ଜଣାଇବେ ଦୀନ ସନ୍ତାନ ଗଣ ହାରିଗୁହାରି
ମେଣ୍ଟାଇବେ ଦୁଃଖ କଷଣ ଢାଳି କରୁଣାବାରି।
ନମସ୍ତେ ଜଗତ ବିଖ୍ୟାତ ଯୋଗୀ ବିବେକାନନ୍ଦ
ଘୋଷେ ତୁମ୍ଭ ନାମ ଜଗତ ତୁମେ ଜଗଦାନନ୍ଦ।
ଅନୁଭବି କ୍ଷେତ୍ର ମହିମା ବ୍ରହ୍ମାନନ୍ଦ ଗୋସାଇଁ
ସ୍ଥାପିଲ 'ରାମକୃଷ୍ଣ ମଠ' ଦୀନ ଦୁଃଖୀଙ୍କ ପାଇଁ।
'ରାଜା ମହାରାଜ' ନାମରେ ତୁମ୍ଭ ନାମ ବିଖ୍ୟାତ
ଅମର କୀରତି ତୁମ୍ଭର 'ଶ୍ରୀରାମକୃଷ୍ଣ ମଠ'।

ତବ ପୁଣ୍ୟ ଜନ୍ମ ଉତ୍ସବ ଆଜି ଭୁବନେଶ୍ୱରେ
ପାଳନ୍ତି ଭକ୍ତ ଶିଷ୍ୟଗଣ ଉଲ୍ଲସିତ ଚିତ୍ତରେ ।
ଜଣାଉଛି ପୂତ ପ୍ରଣାମ ତବ ପୂଜ୍ୟ ପୟରେ
ଜାଗି ଉଠୁ ଦିବ୍ୟ ଚେତନା କର କରୁଣାବାରେ ।

(ରାମକୃଷ୍ଣ ମଠ, ଭୁବନେଶ୍ୱରରେ 'ବ୍ରହ୍ମାନନ୍ଦ ଜୟନ୍ତୀ ୧୩-୦୨-୨୦୨୧ରେ ଲିଖିତ)



# ଭୁଲନା ଶାଗକୁ ରୋଗକୁ ଭୁଲ

ପ୍ରକୃତି ମାତାର ଚାଙ୍ଗୁଡ଼ିରେ ଦେଖ ଜାତି ଜାତି କେତେ ଶାଗ
ଶାଗକୁ ଚିହ୍ନିଲେ ଶାଗକୁ ଖାଇଲେ ଭୁଲିଯିବା ଆମେ ରୋଗ ।
ଗୋଟି ଗୋଟି କରି ଶାଗ କେତୋଟିର କହି ଦେଉଅଛି ନାଆଁ
ଯତନେ ଅଭ୍ୟାସ କରିଣ ଖାଇଲେ ରୋଗ ଛାଡ଼ିଯିବ ଗାଆଁ ।
ବାଡ଼ିରେ ବୁଣିବା ଖଡ଼ା ନେଉଟିଆ ପାଳଙ୍ଗ ପୁରୁଣୀ ମେଥି
କୋଶଳା ମାରିସ କଳମ୍ବ କୁନ୍ଦୁରି କାନିସିରି ଆମ୍ବିଳିତି ।
ଘର ଚାଳପରେ କି ସୁନ୍ଦର ମାଡ଼େ ଲାଉ ଶାଗ ପୋଇନଟି
ବିଲରୁ ତୋଳିବା କୁଇଲଖା, ପିତା ମଦରଙ୍ଗା ପୁଣି ମୋଟି ।
ଆଖିକୋଣୁ ଯଦି ନିଦ ହଜିଯାଏ ସୁନୁସୁନିଆ କୁ ହେଜ
ପାଟିକି ଲାଗଇ ଭାରି ସୁଆଦିଆ ନିଦକୁ କରେ ସହଜ ।
ମିଠା ଲାଗେ ଭାରି କଣ୍ଟା ନେଉଟିଆ କଞ୍ଚନ ସୋରିଷ ଚଣା
ସଜନା ଶାଗର କି କହିବି ଗୁଣ କଳନା କରି ହୁଏନା ।
ଆଳୁ ମୂଳା କୋବି ବୋଇତି କଖାରୁ ଆବର ପାଣି କଖାରୁ
ବାଡ଼ି ବଗିଚାର ଅନାବନା ଶାଗ ଅଫିଟା ପତର ସାରୁ ।
ପାଣି କଖାରୁର ପତରରେ ଭାରି ସୁଆଦିଆ ଲାଗେ ରାଇ
କଳରା ପତର ବରାକୁ ଖାଇଲେ ପାଟିରୁ ଛାଡ଼ଇ ନାହିଁ ।
ଧଣିଆ ପତର ଚଟଣୀରୁ ଟିକେ ଖାଇଲେ ଭୋଜନ ବେଳେ
ରୁଚିକର ହୁଏ ଭୋଜନ ଏ କଥା ମନେ ରଖିଥିବ ଭଲେ ।
ବିରଳ ହେଲାଣି ବରଡ଼ା ଝୁଣ୍ଟୁଡ଼ି ବଥୁଆ କଞ୍ଚନ ଆଦି
ଗନ୍ଧଣା ଅଗସ୍ତି ପଞ୍ଚୁପତ୍ରୀ ପୁଣି ଆଟିକା ପୋଡ଼ି ଇତ୍ୟାଦି ।

ଋତୁ ଅନୁଯାୟୀ ପ୍ରକୃତି ଜନନୀ ଶାଗ, ଫଳ ଉପୁଜାଏ
ନିୟମିତ ଭାବେ ଖାଇଲେ ଦେହରେ ଭ୍ୟାକ୍‌ସିନି ତିଆରି ହୁଏ ।
ପୁରୁଣୀ ଶାଗରେ ନିଜ ଅଜାଣତେ ଦୃଷ୍ଟିଦୋଷ ଦୂର ହୁଏ
ଅଣ୍ଟା ଦରଜକୁ ପଶାରୁଣି ପତ୍ର ସହଜେ ଏଡ଼ାଇ ଦିଏ ।
ସରି ନୁହେଁ ମଲ୍‌ଟି ଭିଟାମିନ୍ ଯାହା ସଜନା ଶାଗରେ ଅଛି
ବିଲ ହିଡ଼ କଡ଼େ କୁଇଲେଖା ପତ୍ରେ ଆଇରନ୍ ପୂରିଅଛି ।
ଗଇଣ ପତର ଗୁଣର ମହତ୍ତ୍ୱ କଥାରେ ନୁହଁଇ କହି
ତପସ୍ୟା କାଳରେ ଖାଉଥିଲେ ଧ୍ରୁବ ଜୀବନ ଧାରଣ ପାଇଁ ।
ପେଟରୋଗ ପାଇଁ ସଞ୍ଜିବନୀ ସାଜେ ଥାଲକୁଡ଼ି ପତ୍ର ରସ
ଦୂରକରେ ଷ୍ଟୋନ୍ ଗଲ୍‌ବ୍ଲାଡ଼ରରେ କଦଳୀ ମଞ୍ଜାର ରସ ।
ମାଗଣାରେ ଦିଏ ମହାର୍ଘ ଔଷଧ ପ୍ରକୃତି ଜନନୀ ସିନା
ଖାଦ୍ୟ ତାଲିକାରୁ କାଟି ଦେଇ ଆମେ ଭୋଗନ୍ତି ରୋଗ ଯାତନା ।

ଭ୍ୟାକ୍‌ସିନ୍- ପ୍ରତିଷେଧକ



# ବୃକ୍ଷବଳି

ବିକାଶ ନାଁରେ ବଳି ପଡୁଛନ୍ତି ଶତଶତ ବୃକ୍ଷରାଜି
ଗଛତଳେ ଥକା ମେଣ୍ଟାଏ ପଥିକ ସପନ ଲାଗଇ ଆଜି।
ଜଗତ ଜନଙ୍କୁ ଜଣାଇବା ପାଇଁ ବସନ୍ତ ବିଜୟ କଥା
ବସନ୍ତ ଦୂତଟି ଆମ୍ବ ବଣଟିଏ ଖୋଜି ଖୋଜି ହୁଏଅଥା।
ହଳଦୀ ବସନ୍ତ ହୁଏ ହନ୍ତସନ୍ତ ଖେଳିବାକୁ ଡାଳେ ଡାଳେ
ବାଟୋଇ ବାପୁଡ଼ା ଡହଳ ବିକଳ ବସିବାକୁ ତରୁ ତଳେ।
ପକ୍ଷୀ ଜଗତରେ ଭାଳେଣି ପଡ଼ଇ କି ଅକାଳ କାଳ ହେଲା
ଜଙ୍ଗଲ ଜଳିଲା ସଡ଼କ କଡ଼ରେ ଗଛ ବଳି ପଡ଼ିଗଲା।
ଶାଖା ମୃଗଟିଏ ଶାଖା ପାଉନାହିଁ କେମିତି କାଟିବ କାଳ
କେଉଁଠୁ ପାଇବ ଖାଦ୍ୟ ବାସଗୃହ ନ ମିଳଇ ଫଳମୂଳ।
ସଡ଼କ କଡ଼ରେ ଗଛ ଲଗାଇବା ଥିଲା ଧର୍ମକାର୍ଯ୍ୟେ ଗଣା
ଲୁଚିଗଲେ କାହିଁ ମହାତ୍ମା ସକଳ ଧର୍ମ ଆଜି ବାଟ ବଣା।
ରାଜଧାନୀ ଭିତ୍ତିଭୂମି ବିକାଶରେ କଂକ୍ରିଟ ଜଙ୍ଗଲ ଛାଇ
ଗ୍ରାସ କରିଲାଣି ପ୍ରକୃତି ମାତାର ଶାଗୁଆ ସବୁଜ ଭୂଇଁ।
ବସନ୍ତର ମୃଦୁ ମଳୟ ସ୍ଥାନରେ ଘୋର ଗିରିଷମ ଜାଳା
ଶୁଭୁନାହିଁ କୋଇଲିର କୁହୁତାନ ବସୁ ନାହିଁ ପକ୍ଷୀ ମେଳା।
ପ୍ରକୃତି ପ୍ରେମିକ କବି ଦାର୍ଶନିକ ନ ହୁଅନ୍ତି ଆନମନା
ଭାସି ଆସୁନାହିଁ ମଳୟ ପବନେ ଆମ୍ବ ବଉଳ ବାସନା।
ବାରମାସ ଷଡ଼ଋତୁଙ୍କୁ ଧରିଛି ପ୍ରକୃତି ଜନନୀ କୋଳେ
ଜଣେ ପରେ ଜଣେ ଧୀର ପାଦପାତି ଆସନ୍ତି ମହୀ ମଣ୍ଡଳେ।

ଅଶାନ୍ତ ବ୍ୟଥିତ ପ୍ରକୃତିର କୋଳ  କ୍ରମ ଲଂଘି ଷଡ଼ଋତୁ
ଶୀତ ବସନ୍ତକୁ ଆବୋରି ବସଇ  ଜ୍ୱାଳାମୟୀ ଗ୍ରୀଷ୍ମ ଋତୁ।
ବଦଳି ଯାଉଛି ପାଣିପାଗ ପୁଣି  ବଦଳୁଛି ଋତୁଚକ୍ର
ବଦଳି ଯାଉଛି ଜୀବନର ଧାରା  ବଦଳେ ଜୀବନ ଚକ୍ର।
ସୁଖ ସମ୍ଭୋଗର ଲାଳସାରେ ମତ୍ତ  ମୂଢ଼ ଏ ମାନବ ଜାତି
ନବୁଝଇ ଆନ ଜୀବନ ଯାତନା  ନ ବୁଝଇ ସ୍ନେହ ପ୍ରୀତି।
ଉଦ୍ଭିଦ ବଞ୍ଚିଲେ ମଣିଷ ବଞ୍ଚିବ  ପ୍ରକୃତି ସର୍ଜନା ଏହି
ସବୁ ଜାଣିଶୁଣି କାରଣ ସାଜଇ  ସୃଷ୍ଟିର ବିଲୟ ପାଇଁ।

ଶାଖାମୃଗ- ମାଙ୍କଡ଼



# ଭାରତର ନାରୀ

ଭାରତ ଦେଶ ନାରୀରେ ତୁମେ  ଭାରତ ଦେଶ ନାରୀ
ଅତୀତ ତୁମ କେଡ଼େ ମହାନ  ଦେଇଅଛ ପାଶୋରି।
ଏଇ ଦେଶର ନାରୀ ସେ ଥିଲେ  ଗାର୍ଗୀ ମୈତ୍ରେୟୀ ନାମ
ଜ୍ଞାନୀ ଗଣରେ ବିଦୂଷୀ ପଣେ  କେ ତାଙ୍କ ସରିସମ।
ଏଦେଶ ନାରୀ ଖଡଗ ଧରି  ଅରାତି ସଙ୍ଗେ ଲଢ଼ି
ପର ଅଧୀନ ନହେବା ପାଇଁ  ଦିଏ ସେ ପ୍ରାଣ ବଳି।
କ୍ଷଣ ଭଙ୍ଗୁର ଅଟେ ସଂସାର  'ମଦାଳସା' ତାହା ଜାଣି
ନିଜ ସନ୍ତାନ ମନେ ଦିଅନ୍ତି  ବଇରାଗ୍ୟ ବୀଜ ବୁଣି।
ଏଇ ଦେଶରେ ତପୋବଳରେ  ତାପସୀ ଅନସୂୟା
ବାନ୍ଧିଲେ ହର, ବିରଞ୍ଚି, ବିଷ୍ଣୁ  ରଚି ସନ୍ତାନ ମାୟା।
ଜ୍ୟୋତିର୍ବିଜ୍ଞାନେ ଗଣିତ ଜ୍ଞାନେ  ହୋଇଲେ ପାରଦର୍ଶୀ
ସୂତ୍ର ଲେଖିଲେ ଅମର ହେଲେ  ଏ ଦେଶ ଲୀଳାବତୀ।
ଏଇ ଦେଶର ସାବିତ୍ରୀ ସୀତା  ପରମ ପତିବ୍ରତା
ପରାସ୍ତ କରି ଯମ ରାଜାଙ୍କୁ  ରଖିଲେ ପରାକାଷ୍ଠା।
ବିଦୀର୍ଣ୍ଣ ହେଲେ ବସୁଧା ମାତା  ସତୀ ଅପମାନ ଜାଣି
କୋଳେଇ ନେଲେ ନିଜ କୋଳରେ  ସୀତା ସତୀ ଶିରୋମଣି।
ନାହିଁ ସେ କାଳ ନାହିଁ ସେ ବେଳ  ସପନ ଲାଗେ କଥା
ଆଜିର ନାରୀ ଦୁର୍ଦ୍ଦଶା ହେରି  କାନ୍ଦେ ଭାରତ ମାତା।
ସମ୍ବାଦ ପତ୍ର ଦୂର ଦର୍ଶନ  ମୁଖ୍ୟ ଖବର ନାରୀ
କାହିଁ ମାରଣ କାହିଁ ଧର୍ଷଣ  ଯାତନା ଅସୁମାରୀ।

ବଦଳିଗଲା ସମାଜ ନୀତି
ଶୃଙ୍ଖଳା ଢିଲା ଆଜି
ନାରୀ ସମାଜ ବାଟ ହୁଡ଼ଇ
'ଲଜ୍ଜା' ଭୂଷଣ ତେଜି।
ସେବା ଶୁଶ୍ରୂଷା ସପନ ଆଜି
ସପନ ପୂଜ୍ୟପୂଜା
ନିଜ ସନ୍ତାନ ପାଳିବା ପାଇଁ
ବୁଢ଼ାବୁଢ଼ୀଙ୍କୁ ଖୋଜା।
କଥାରେ ଅଛି ନାରୀ ସୌନ୍ଦର୍ଯ୍ୟ
ନିହିତ କେଶେ, ବେଶେ
କେଶ ଅଲଗା ବେଶ ଅଲଗା
ଆଜି ଭାରତ ଦେଶେ।
ନାରୀ ନୁହଁଇ ପୁରୁଷ ପାଇଁ
ଖେଳନାର କଣ୍ଢେଇ
ଭାଙ୍ଗଇ ସେହି ଗଢ଼ଇ ସେହି
ପରମା ଶକ୍ତିମୟୀ।
ଏଦେଶ ନାରୀ ସମାଜ ଥରେ
ଅତୀତ କଥା ହେଜ
ଉଜାଡ଼ ନାହିଁ ନିଜ ସଂସ୍କୃତି
ସଜାଡ଼ି ଦିଅ ସମାଜ।

('ମହିଳା ଦିବସ' ଉପଲକ୍ଷେ)



# ବାଣୀପୁତ୍ର କୈଳାସ

କିଏ ସେ ଡାକଇ ମାଆ ମାଆ ବୋଲି
ଦୂରଭାଷ ଆରପଟେ
'ମା' କବିତାର ମଧୁର ମୂର୍ଚ୍ଛନା
ଶୁଭୁଥିଲା ଶ୍ରୁତି ପଟେ।

କିଏ ତୁମେ ବୋଲି ପଚାରି ଦେଲି ମୁଁ
ଶୁଣିଲି କରୁଣ କଥା
ଶିହରି ଉଠିଲା ହୃଦ ତନ୍ତ୍ରୀ ମୋର
ପାଇଲି ଦାରୁଣ ବ୍ୟଥା।

ମା, ମୁଁ କୈଳାସ ଘର ଯାଜପୁର
ପେଟ ପୋଷେ ରିକ୍ସା ଟାଣି
କଅଁଳ ବୟସେ ବାପ ଛେଉଣ୍ଡ ମୁଁ
ପିତୃ ସ୍ନେହ ନାହିଁ ଜାଣି।

ଦୁଃଖିନୀ ମା' ମୋ ପାଳୁଥିଲା ମୋତେ
ସହି ଦୁଃଖ ଅନୁପମ
ପଢୁଥିଲି ପାଠ ନବମ ଶ୍ରେଣୀରେ
ଡାକିନେଲା ତାକୁ ଯମ।

ସେ ଦିନୁ ପୋଥିରେ ବନ୍ଧା ହେଲା ଡୋରି
ଆଉ ପାଠ ପଢ଼ି ନାହିଁ
ଅନ୍ତଃ ଜଗତରେ ଜାଗିଲା ପ୍ରେରଣା
କବିତା ଲେଖିବା ପାଇଁ।

ଭେଟିଲି ଜନନୀ ଝଙ୍କଡ଼ ବାସିନୀ
ରଖିଲି ମୁଁ ତାଙ୍କୁ ସାକ୍ଷୀ
ଲେଖୁଛି କବିତା ଲେଖି ଚାଲୁଥିବି
ମୁଦିବା ପର୍ଯ୍ୟନ୍ତ ଆଖି।

ପଢ଼ିଲି ତୁମର 'ମା' କବିତାଟି
'ଶିବଶକ୍ତି' ପତ୍ରିକାରେ
ମାତୃହୀନ ମୁହିଁ ଡାକିବି ତୁମକୁ
ମାଆ ବୋଲି ଅନ୍ତରରେ।

ପାଇଲି କୈଳାସ ସ୍ୱଚ୍ଛ ପରିଚୟ
ଶୁଣିଲି ଜୀବନ ଗାଥା
ନୟନୁ ଝରିଲା ଲୋତକର ବନ୍ୟା
ତୁଣ୍ଡୁ ନସ୍ଫୁରଇ କଥା।

ଧନ୍ୟ ହେଲି ତୁମ ମା' ଡାକ ଶୁଣି
ଧନ୍ୟ କଇଳାସ ଧନ୍ୟ
ସତେ କ'ଣ ତୁମ ଅକୁହା ଅଭାବ
ପୂରଣେ ହେବି ଭାଜନ।

ଦିବ୍ୟ ଜନନୀଙ୍କ ଅମୃତ ଆଶିଷ
ଯା'ଶିରେ ପଡୁଛି ଝରି
ଦୁଃଖୀ ବୋଲି ତାକୁ କେମିତି କହିବି
ସଂସାରେ କେ ତାହା ସରି।

କୈଳାସ କଲମୁ ଝରି ପଡୁଅଛି
କବିତା କଲ୍ଲୋଳ ଧାର
ପିନ୍ଧିଲେଣି କେତେ ବିଜୟ ମୁକୁଟ
ସାରସ୍ୱତ ଜଗତର।

ସରିନାହିଁ ତାଙ୍କ ବିଜୟ ଉତ୍ସବ
ଚାଲୁଅଛି ଚାଲୁଥିବ
କୈଳାସ କୀରତି କେତନକୁ ଚାହିଁ
ଚିତ୍ତ ମୋ ଉଲ୍ଲସୁ ଥିବ।

ଜଗତ ଜନନୀ ପାଦରେ ପ୍ରଣତି
ଡାକି ମୁଁ ଡାକଇ ମାଆ
କୃପାନେତ୍ରେ ଚାହିଁଥିବ କୈଳାସକୁ
ତୁମେ ଏକା ତାର ସାହା।

(କବି କୈଳାସ ପାତ୍ର, କୋରାବନ୍ଦୀ, ଯାଜପୁରଙ୍କ ଉଦ୍ଦେଶ୍ୟରେ ଲିଖିତ)

❑❑

# ଶ୍ରୀଗୁରୁଙ୍କ ସାନ୍ନିଧରେ

ଶ୍ରୀ ଗୁରୁ ଅଟନ୍ତି ଶାନ୍ତିର ଭଣ୍ଡାର ଜ୍ଞାନ ଶକ୍ତି ପ୍ରଦାୟକ
ସାନ୍ନିଧ ଲଭିଲେ ଶାନ୍ତ ହୋଇଯାଏ ଅଶାନ୍ତି ଅନଳ ଯାକ।
ଗୁରୁ ସାନ୍ନିଧରେ ଅନ୍ତରେ ଝରଇ ଦିବ୍ୟ ଆନନ୍ଦର ଧାରା
ଭୁଲି ହୋଇଯାଏ ଜୀବନ ଯାତନା ଲଭି ସେ ଅମୃତ ଧାରା।
କେଜାଣି କାହିଁକି ଆଜି ପ୍ରତ୍ୟୁଷରୁ ମନ ହେଲା ଆନମନା
ପିତା ଲାଗୁଥିଲା ସାଙ୍ଗ ସାଥୀ ମୋହ ବିଷୟ ଭୋଗ ବାସନା।
ବୁଝାଇଲି କେତେ ମନକୁ ମୋହର ନିରବ ନିଶ୍ଚଳେ ବସି
ମହା ଶିବରାତ୍ରି ପୁଣ୍ୟ ଦିବସରେ ଶିବ ନାମ ଘୋଷି ଘୋଷି।
ପଢୁଥିଲି ଯେତେ ସ୍ତବ ସ୍ତୁତି ପ୍ରଭୁ ବିଶ୍ୱନାଥଙ୍କୁ ସୁମରି
ହୃଦୟେ ନଥିଲା ଭକ୍ତିର ପ୍ଲାବନ ଲାଗୁଥିଲା ଯନ୍ତ୍ରପରି।
ଦୁର୍ଗା ମଣ୍ଡପର ଶିବ ମନ୍ଦିରରେ ଚାଲିଥିଲା ପୂଜାର୍ଚ୍ଚନା
ବନ୍ଧୁ କେତେଜଣ ଉପସ୍ଥିତ ଥାଇ କରୁଥିଲେ ଉପାସନା।
ପୂଜା ଶେଷଯାଏ ରହି ନପାରିଲି ଅସ୍ଥିର ଚିତ୍ତକୁ ଧରି
ଆସିବି ଟିକିଏ ପରେ କହି ତାଙ୍କୁ ଘରକୁ ଆସିଲି ଫେରି।
ଶ୍ରୀଗୁରୁ ଦର୍ଶନ କଲା ଉଚ୍ଚାଟନ ଶୁଭ ଶିବରାତ୍ରି ସଞ୍ଜେ
ଦର୍ଶନ ଆଶାରେ ବେଗେ ବାହାରିଲି ଝିଅଗଲା ମୋର ସଙ୍ଗେ।
ମିଳିଲା ଦର୍ଶନ ଧନ୍ୟ ହେଲା ପ୍ରାଣ ନମିଲି ଅଭୟ ପଦେ
ସମ୍ଭାଷିଲେ କେତେ ଆଦରେ ଯତନେ ପୂର୍ବ କଥା କହି ମୋଦେ।
ଦୀର୍ଘଦିନ ପରେ ମିଳିଲା ଦର୍ଶନ କହିଲି ପ୍ରକାଶି ଖେଦ
ବୁଝାଇ କହିଲେ ଗୁରୁଶିଷ୍ୟ ଭାବ ଶରୀରେ ନୁହେଁ ଆବଦ୍ଧ।

ଏ ସମ୍ବନ୍ଧ ଅଟେ ଜନ୍ମ ଜନ୍ମାନ୍ତର ସମୟରେ ମିଳିଥାଏ
ନଆସି ପାରିଲେ ଦୁଃଖ କରନାହିଁ ମନରେ ମୁଁ ଦେଖୁଥାଏ।
ଦୂର ହୋଇଗଲା ବିଷାଦ କାଳିମା ବିଷାଦଗ୍ରସ୍ତ ମନରୁ
ଦୂର ହୁଏ ଯଥା ଘନ ଅନ୍ଧକାର ଆଲୋକର ସଂସ୍ପର୍ଶରୁ।
ପଢ଼ିଛନ୍ତି ବହି ରଖିଛନ୍ତି ମନେ ମୋ ଲେଖାର କେତେଧାଡ଼ି
ଆହୁରି ଲେଖିବ ବହି ଛପାହେବ ଦେଲେ ଆଶିଷ ଅଜାଡ଼ି।
ମୁଁ ନୁହେଁ ଭାଜନ ବହି ଲେଖିବାକୁ ସବୁ ତାଙ୍କ ଆଶୀର୍ବାଦ
ନିମିତ୍ତ ମାତ୍ର ମୁଁ ଲେଖନୀ ଧରିଛି ସବୁ ତାଙ୍କରି ପ୍ରସାଦ।
ଧନ୍ୟ ଗୁରୁ ଧନ୍ୟ କରୁଣା ତୁମର ଅପାର୍ଥିବ ଭୂମଣ୍ଡଳେ
ଲୋଟୁ ମୋର ଶିର ଜନ୍ମ ଜନ୍ମାନ୍ତରେ ତୁମରି ଚରଣ ତଳେ।

(ମହାଶିବରାତ୍ରି ୨୦୨୧ ରେ ଲିଖିତ)



# ଅଭିନନ୍ଦନ

ତୁମ ସଫଳତା ସେତୁବନ୍ଧ ପରେ ରାମନାମ ଶିଳା ଧାଡ଼ି
କ୍ଷୁଦ୍ର ଜୀବଟିଏ ଗୁଣ୍ଡୁଚି ମୂଷା ମୁଁ ବାଲି ଦେଉଛି ଅଜାଡ଼ି ।
'ବଣ ଦେଉଳର ସୁନା ନେଉଳଟି' ବଣରେ ନହୋଇ ସ୍ଥିର
ଧାଇଁ ଧାଇଁ ଶେଷେ ଆବୋରି ବସିଲା କେନ୍ଦ୍ର ଶିଶୁ ପୁରସ୍କାର ।
ନେଉଳ ଭାଇ ସେ ସବୁଥିରେ ଆଗ ସବୁ କର୍ମରେ ସେ ଶୁଭ
କେମିତି ଛାଡ଼ନ୍ତା କେନ୍ଦ୍ର ସାହିତ୍ୟର ଦରବାରେ ତା'ର ଭାଗ ।
ଯେଦିନ ଜାଣିଲି ସୁନା ନେଉଳଟି ପାଇଅଛି ପୁରସ୍କାର
କୁଣ୍ଢେମୋଟ ଛାତି ଫୁଲି ଉଠିଥିଲା ଆନନ୍ଦ ଉଲ୍ଲାସେ ମୋର ।
ତୋଷିଥିଲ କେଉଁ ଜନ୍ମେ କାଶୀବାସୀ ସେବିଥିଲ ଜଗନ୍ନାଥ
ଅର୍ଜିଥିଲ କେତେ ଶୁଭକର୍ମ ଫଳ କାଳେ ହୋଇଲା ପ୍ରାପତ ।
ନିରଳସ ତୁମ କର୍ମମୟ ପଥ ସଦା କର୍ମରତ ଥାଉ
ଅହଙ୍କାର ଶୂନ୍ୟ ଅନ୍ତର ତୁମର ପୁଲକିତ ସଦା ରହୁ ।
ଅଭିନନ୍ଦନ ଏ ନୁହଁଇ ମୋହର ଅନ୍ତରର ଶ୍ରଦ୍ଧାଫୁଲ
ଜଗତରେ କିଏ ବୁଝୁକି ନବୁଝୁ ତୁମେ ବୁଝିବ ତା' ମୂଲ ।

(କେନ୍ଦ୍ର ସାହିତ୍ୟ ଏକାଡ଼େମି ପୁରସ୍କାର ପ୍ରାପ୍ତ ଡ. ରାମଚନ୍ଦ୍ର ନାୟକଙ୍କୁ ଅଭିନନ୍ଦନ)
ପୁରସ୍କାର ପାଇଥିବା ପୁସ୍ତକ- "ବଣ ଦେଉଳରେ ସୁନା ନେଉଳ"



# ଦେବୀ ବନ୍ଦନା

ତୁମେ ବିଶ୍ୱରୂପା ତୁମେ ବିଶ୍ୱମ୍ଭରା ତୁମେ ବିଷ୍ଣୁମାୟା ତୁମେ ମହାମାୟା
କୀଟ ଠାରୁ ବ୍ରହ୍ମ ପରିଯନ୍ତେ ମାତା ବ୍ୟାପି ରହିଅଛି ତବ କାୟା।
ତୁମେ ବିଶ୍ୱମାତା ତୁମେ ସିନ୍ଧୁସୁତା ତୁମେ ମହାଶ୍ୱେତା ତୁମେ ଗିରିବାଳା
ତୁମେ ଜଗଦ୍ଧାତ୍ରୀ ତୁମେ ମହାରାତ୍ରି ଲୀଳାମୟୀ ତୁମେ ମହା ଲୀଳା।
ତୁମେ ଯୋଗେଶ୍ୱରୀ ତୁମେ ବିଶ୍ୱେଶ୍ୱରୀ ତୁମେ ରାସେଶ୍ୱରୀ ମହା ରସମୟୀ
ତୁମେ ଜଗନ୍ମାତା ତୁମେ କଳ୍ପଲତା ଅନିନ୍ଦିତା ମହା ସୁଖଦାୟୀ।
ତୁମେ ଇଚ୍ଛାମୟୀ ତୁମେ କୃପାମୟୀ ତୁମେ ଜ୍ଞାନମୟୀ ବିଜ୍ଞାନ ସ୍ୱରୂପା
ତୁମେ ମହା କାଳରୂପା ମହାକାଳୀ ଲୀଳାମୟୀ ସୃଷ୍ଟି ସୃଜନିକା।
ତୁମେ ଆଦିଶକ୍ତି ପରମା ପ୍ରକୃତି ତୁମେ ମହାକାନ୍ତି ତୁମେ ମହାଦ୍ୟୁତି
ତୁମ ରଙ୍ଗ ପାଦେ ମାଗଇ ଶରଣ ଦୟାକର ମା' କରୁଣାବତୀ।

(ଚଇତ୍ର ନବରାତ୍ରରେ ଲିଖିତ)



# ମୁକ୍ତି ମୋର ଲୋଡ଼ା ନାହିଁ

ତୁମେ ସାଥେ ଥିଲେ ପ୍ରଭୋ

ଲୋଡ଼ିବି ନାହିଁ ମୁକତି

ପାଶେ ପାଶେ ଥିଲେ ତୁମେ

କାହିଁକି ପୂଜିବି ମୂର୍ତ୍ତି ।

ଫୁଲ ଗଛରେ ମୁଁ ଯଦି

ଦେଖିବି ତୁମରି ରୂପ

କିମ୍ପାଇ ତୋଳିବି ଫୁଲ

କୁହ ଆହେ ବିଶ୍ୱରୂପ ।

ତୁମେ ଯଦି ଦୀପଶିଖା

ଜାଳିବି କାହିଁକି ଦୀପ

ଚନ୍ଦନ ଘୋରିବି ନାହିଁ

ସେ ତ ତୁମରି ସ୍ୱରୂପ ।

ତୋଳିବି ନାହିଁ ତୁଳସୀ

ତୁଳସୀ ତୁମରି ଅଙ୍ଗ

ଢାଳିବି ନାହିଁ ଉଦକ

ସିଏ ବି ତୁମ ତରଙ୍ଗ ।

ନୈବେଦ୍ୟ ଆଣିବି କାହୁଁ

ଜଗତ ତୁମ ପ୍ରସାଦ

ଦେଇ ନାହଁ ଅନୁଭବ

ତେଣୁ ଘାରେ ଅବସାଦ।

ସହିବାରେ ନାହିଁ କୁଣ୍ଠା

ଜଠର ଯାତନା ମୋର

ଭବ ଦାଣ୍ଡେ ଚାଲିବାରେ

ଯଦି ଧରିଥିବ କର।

ଯାହା ବଖାଣିଛି ଶାସ୍ତ୍ର

ଶାସ୍ତ୍ର ହିଁ ତୁମରି ମୁଖ

ମୁକ୍ତି ନୁହେଁ ତୁମ୍ଭ ସଙ୍ଗ

ମୋ ପାଇଁ ପରମ ସୁଖ।

❑❑

# ନ ଦେଲେ ନ ଦିଅ ପଛେ

ନ ଦେଲେ ନ ଦିଅ ପଛେ    ଅନ୍ତରରେ ଦରଶନ
ଶକ୍ତି ଦିଅ ପ୍ରତି ଶ୍ୱାସେ    ଜପିବାକୁ ତୁମ୍ଭ ନାମ ।
ନ ଦେଲେ ନ ଦିଅ ପଛେ    ଆସକ୍ତି ବିହୀନ ମନ
ଦୟାକର ହାତ ଗୋଡ଼    ଚଳୁ ଚଳୁ ଯାଉ ପ୍ରାଣ ।
ନ ଦେଲେ ନ ଦିଅ ପଛେ    ସମ ଭାବ ସମ ଚିତ୍ତ
କୃପା କର ତୁମ ଭାବୁ    ହେବି ନାହିଁ କେବେ ଚ୍ୟୁତ ।
ନ ଦେଲେ ନ ଦିଅ ପଛେ    ଦିବ୍ୟ ଅନୁଭବ ସୁଖ
ତୁମ୍ଭ ଗୀତ ଗାଇବାରେ    କରନା ମୋତେ ବିମୁଖ ।
ନ ବୁଝିଲେ ନ ବୁଝିବ    ଅନ୍ତର ବେଦନା ମୋର
ଅନ୍ତର୍ଯ୍ୟାମୀ ଅନ୍ତରରୁ    କରିଦେବ ନାହିଁ ପର ।
ନ ମିଳିଲେ ନ ମିଳିବ    କୈବଲ୍ୟ କଣିକାଟିଏ
ନାମାମୃତ ପିଉଥିବି    ପିଣ୍ଡେ ପ୍ରାଣ ଥିବା ଯାଏ ।
ନ ଜାଣିଲେ ନ ଜାଣେ ମୁଁ    କିଏ ମୁହିଁ ଯିବି କାହିଁ
ରହିଥିବି କଳା ଧଳା    ହଳଦିଆ ମୁଖ ଚାହିଁ ।



ଜନ୍ମ ୧୯୫୦ ମସିହା, କେନ୍ଦ୍ରାପଡ଼ା ଜିଲ୍ଲାର ଏକ ମଫସଲ ଅଞ୍ଚଳରେ।

୧୯୭୪ ମସିହାରୁ ଶିକ୍ଷକତାକୁ ବୃତ୍ତି କରି ୨୦୦୮ ମସିହାରେ 'ପ୍ରତାପ ଶାସନ ହାଇସ୍କୁଲ୍', ବାଲକାଟିରୁ ଅବସର ଗ୍ରହଣ କରିଛନ୍ତି।

ଅବସର ଜୀବନରେ ଘରେ ବସି ବସି ନିଜ ଜୀବନ କଥା କିଛି ଲେଖିଛନ୍ତି। ତାହା 'ଯାହା ହଜାଇ ଦେଇଛି ଥରେ' ଓ 'ପେଡ଼ି ଆଳିମାଳିକା' ନାମରେ ଦୁଇଟି ପୁସ୍ତକରେ ପ୍ରକାଶ ପାଇଛି ଓ ପାଠକୀୟ ଆଦୃତି ଲାଭ କରିଛି। "ଭିନ୍ନ ବଣମଲ୍ଲୀ" ହେଉଛି ତାଙ୍କର ତୃତୀୟ ସୃଷ୍ଟି। ବର୍ତ୍ତମାନ ସମାଜରେ ମାନବିକ ମୂଲ୍ୟବୋଧର କ୍ରମ ଅବକ୍ଷୟ ଓ ପ୍ରକୃତି ଉପରେ ମଣିଷର ଅହେତୁକ ଅତ୍ୟାଚାର ଲେଖିକାଙ୍କୁ ବ୍ୟଥିତ କରିଛି। 'ଭିନ୍ନ ବଣମଲ୍ଲୀ'ର କବିତା ଓ କଥା ଗୁଡ଼ିକରେ ପାଠକେ ତା'ର ସୂଚନା ପାଇବେ ବୋଲି ଆଶା ଓ ବିଶ୍ୱାସ।

ପ୍ରକାଶିକା



କାର୍ଗ
ଭୁବନେଶ୍ୱର